ପ୍ରକାଶକ :
ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨
ଫୋନ୍ : 2619233 (O), 2623923 (R)

ପ୍ରକାଶନ ପରିଚାଳନା :
**ଅଭିରାମ ମହାପାତ୍ର**

ଡି.ଟି.ପି. ଓ ମୁଦ୍ରଣ :
ତପନ କୁମାର ମହାପାତ୍ର
**ଅପ୍‌ଟିମା (ଅଫ୍‌ସେଟ୍) ପ୍ରିଣ୍ଟସ୍**
ସୂତାହାଟ, କଟକ-୧
[ ଫୋନ୍ : 2625148 ]

ପ୍ରଥମ ସଂସ୍କରଣ : ୦୧.୦୪.୨୦୦୬
(୬୦୦ ବହି)

ମୂଲ୍ୟ : ଟ.୭୫.୦୦
ସାଦାବନ୍ଧେଇ : ଟ.୬୫.୦୦

# ସୂଚୀପତ୍ର

—

# ପୂର୍ବାଭାସ

ବହୁବର୍ଷଧରି ବହୁ ବନ୍ଧୁ କହିଛନ୍ତି – ମୋ ଜୀବନର ଅନୁଭୂତି କଥା ଲିପିବଦ୍ଧ କରିବାକୁ । ବହୁ ଡେରିରେ ଲେଖା ଆରମ୍ଭକଲି । ଲେଖିଲି – ମୋର ବାଲ୍ୟଜୀବନ, ଛାତ୍ର-ଜୀବନ ଓ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନର ଅନୁଭୂତି । ବିଶେଷକରି ଲେଖିଛି ସ୍ୱାଧୀନତା ସଂଗ୍ରାମର ଶେଷ ଦଶବର୍ଷର ସଂଘର୍ଷପୂର୍ଣ୍ଣ, ଲୋମହର୍ଷଣକାରୀ କାହାଣୀର ବିଶ୍ଳେଷଣ ମୋ ଦୃଷ୍ଟିକୋଣରୁ – ୧୯୪୭ ମସିହାରେ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ।

ବହୁ କଥା ଅନୁଲ୍ଲେଖ ରହିଗଲା – ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ ଏକାଡେମୀକ୍ କାଉନ୍‌ସିଲ୍‌ରେ ମୋର କାର୍ଯ୍ୟକଳାପ, ପାର୍ଲାମେଣ୍ଟ ସଭ୍ୟ ଓ ମନ୍ତ୍ରୀ ପଦରେ ମୋର ଅନୁଭୂତି, ମୋର ସାମ୍ବାଦିକ ଓ ଓକିଲାତି ଜୀବନ-କଥା ଇତ୍ୟାଦି ।

ଲେଖିବାପାଇଁ ସବୁଠାରୁ ବେଶୀ ଉତ୍ସାହ ଦେଇଥିଲେ ମୋର ସହଧର୍ମିଣୀ ଅଧ୍ୟାପିକା ଉମା ମିଶ୍ର, ମୋର ଝିଅ ଓ ପୁଅ – ତାପସୀ ଆଉ ମାନବେନ୍ଦ୍ର । ଉମା ଆଉ ନାହିଁ – ତା' ସ୍ମୃତିରେ ଏ ଲେଖା ଉତ୍ସର୍ଗ କରୁଛି । ମୋ ଝିଅ ପୁଅ ଓ ଅନୁରୋଧ କରୁଥିବା ବନ୍ଧୁମାନେ ନିଶ୍ଚୟ ସୁଖୀହେବେ ଏ ପୁସ୍ତକର ପ୍ରକାଶନରେ ।

କୃତଜ୍ଞତା ଜଣାଉଛି, ଭ୍ରାତୃସମ ମୋର ପଡ଼ୋଶୀ ଓ ଶୁଭେଚ୍ଛୁ ଅଭିରାମଙ୍କୁ – ଯେ ବହି ଲେଖା ଆରମ୍ଭ ହେବା ପୂର୍ବରୁ ପ୍ରକାଶନର ଦାୟିତ୍ୱ ଗ୍ରହଣ କରିଛନ୍ତି ।

ସୂତାହାଟ, କଟକ
୦୧.୦୪.୨୦୦୬

ବିବୁଧେନ୍ଦ୍ର ମିଶ୍ର

## (୧)

# ଆମ ପରିବାର

ଏକ ମଧ୍ୟବିତ୍ତ ସ୍ୱଚ୍ଛଳ ପରିବାରରେ ମୋର ଜନ୍ମ ୧୯୨୦ ମସିହା ନଭେମ୍ବର ୩୦ତାରିଖରେ । ବାପା ଲୋକନାଥ ମିଶ୍ର ବିଭିନ୍ନ ସରକାରୀ ପଦବୀରେ ଓ ଶେଷରେ ଗଡ଼ଜାତର ଦେଓ୍ୱାନ ରୂପେ କାର୍ଯ୍ୟ କରିଥିଲେ । ସାନବାପା ଦିବ୍ୟସିଂହ ମିଶ୍ର ବିଭିନ୍ନ ସ୍କୁଲରେ ଶିକ୍ଷକତା କରିଥିଲେ । ବିରାଟ ବପୁ, ଗୌରବର୍ଣ୍ଣ, ଆଣ୍ଠୁଲମ୍ବ ଧୋତି ଓ ଚାଦର, ହାତରେ ତାଳପତ୍ର ଛତା ଓ ପାଦରେ କଠୋଉ । ସେ ଥିଲେ ଗମ୍ଭୀର, ଉଦାର, ସ୍ନେହୀ, ସ୍ୱାଧୀନଚେତା, ଜାତୀୟବାଦୀ । ଲୋକମାନ୍ୟ ବାଳଗଙ୍ଗାଧର ତିଳକଙ୍କ କାର୍ଯ୍ୟାବଳୀରେ ସେ ଉଦ୍‌ବୁଦ୍ଧ ହୋଇ ଛାତ୍ରଗଣଙ୍କ ହୃଦୟରେ ଦେଶପ୍ରୀତି ଜାଗ୍ରତ କରାଇବାକୁ କର୍ତ୍ତବ୍ୟରୂପେ ଗ୍ରହଣ କରିଥିଲେ । ସମ୍ବଲପୁର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଥିଲାବେଳେ ଛାତ୍ରମାନଙ୍କୁ ତିଳକଙ୍କ ଜୀବନୀ ପଢ଼ାଇବା ଅପରାଧରେ ସେ ଚାକିରିରୁ ନିଲମ୍ବିତ ହୋଇଥିଲେ । ପରେ ଗୋରା ସ୍କୁଲ ଇନିସ୍‌ପେକ୍ଟରଙ୍କୁ ଲକ୍ଷ୍ୟକରି କଠୋଉ ଫୋପାଡ଼ିବା ଅପରାଧରେ ଅଭିଯୁକ୍ତ ହୋଇଥିଲେ ।

ସର୍ବଶ୍ରୀ ପଣ୍ଡିତ ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ ପ୍ରଭୃତି ତାଙ୍କ ଛାତ୍ର ଥିଲେ । ସବୁଠାରୁ ଅଧିକ ପ୍ରିୟ ଥିଲେ ଗୋପବନ୍ଧୁ । ଉଭୟଙ୍କ ମଧ୍ୟରେ ସଂପର୍କର ଗୋଟିଏ ଘଟଣା ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଗୋପବନ୍ଧୁ ଦାସ ପୁରୀ ଜିଲ୍ଲା ସ୍କୁଲ ଛାତ୍ର ଥିବା ସମୟରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କବିବର ରାଧାନାଥ ରାୟ-ସପକ୍ଷବାଦୀ ଓ ବିପକ୍ଷବାଦୀ ଭାବେ ପରିଚିତ ଦୁଇଟି ସାହିତ୍ୟ ଗୋଷ୍ଠୀ ଥିଲେ । କବିବର ବଂଗଳା ଭାଷାର ଛନ୍ଦ ଓ ଶୈଳୀର ଅନୁକରଣ କରୁଛନ୍ତି ବୋଲି ବିପକ୍ଷ ଗୋଷ୍ଠୀର ମତ ଥିଲା । ରାଧାନାଥପ୍ରେମୀ ବାମଣ୍ଡାର ସାହିତ୍ୟିକ—ରାଜା ବାସୁଦେବ ସୁଢ଼ଳଦେବ 'ବିଜୁଳି' ନାମକ ଏକ ପତ୍ରିକା ପ୍ରକାଶ କଲେ । ବିରୋଧୀ ଗୋଷ୍ଠୀଙ୍କ ପକ୍ଷରୁ କଟକରୁ ପ୍ରକାଶପାଇଲା 'ଇନ୍ଦ୍ରଧନୁ' ପତ୍ରିକା ।

ଗୋପବନ୍ଧୁ ଦାସ ଇନ୍ଦ୍ରଧନୁରେ ଲେଖିଲେ 'ଧଡ଼ିଆ ପଣ୍ଡିତ-ମନ୍ୟ, ବାଉରିସାହିରେ ଶୃଗାଳ-କେଶରୀ ପରି ହେଉଥାଏ ଗଣ୍ୟ' ।

ସେତେବେଳେ ରାଧାନାଥବାବୁ ସ୍କୁଲ-ଇନ୍‌ସପେକ୍ଟର । ଜଣେ ସ୍କୁଲ-ଛାତ୍ରଠାରୁ ଏପରି କଟୂକ୍ତି ଅସହ୍ୟ । ଏ ପିଲା ତ ଆଜିଠୁ ଏମିତି ହେଲାଣି ଭବିଷ୍ୟତରେ କ'ଣ

ନହେବ ? ଗୋପବନ୍ଧୁଙ୍କୁ ସ୍କୁଲରୁ ବହିଷ୍କାର କରିବାକୁ ସେ ସ୍ଥିରକଲେ । ସାନବାପା ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ଶିକ୍ଷକ । ସେ ରାଧାନାଥବାବୁଙ୍କୁ ସାକ୍ଷାତ କରି ତାଙ୍କ ରାଗ କମାଇବା ପାଇଁ ଚେଷ୍ଟାକଲେ– 'ପିଲାଟେ ଲେଖିପକାଇଛି, ବୁଝିନାହିଁ, ବୁଝିଯିବ ।' ରାଧାନାଥବାବୁଙ୍କ ରାଗ କମିଲା । ସେ ବର୍ଷର ପ୍ରାଇଜ ହରାଇ ଓ ୧୦ଟଙ୍କା ଜୋରିମାନା ଦେଇ ଗୋପବନ୍ଧୁ ଦାସ ବର୍ତ୍ତିଗଲେ ।

ଆଉ ଗୋଟିଏ ଘଟଣା, ସମାଜ-ସମ୍ପାଦକ ରାଧାନାଥ ରଥ ଲେଖିଥିଲେ– ୧୯୨୧ ମସିହା ଅସହଯୋଗ ଆନ୍ଦୋଳନ ସମୟରେ ଗୋପବନ୍ଧୁ ଦାସଙ୍କ ବିଚାରବେଳେ ସାନବାପା ଟଙ୍କାଧରି କଚେରି ଦୁଆର ମୁହଁରେ ଠିଆହୋଇଥିଲେ– ଜୋରିମାନା ହେଲେ ଦେଇଦେବାକୁ ।

ସାନବାପାଙ୍କ ମୃତ୍ୟୁବେଳକୁ ଗୋପବନ୍ଧୁ ଦାସ ହଜାରୀବାଗ୍ ଜେଲରେ ରାଜବନ୍ଦୀ । ମନରେ କ୍ଷୋଭ ଜାତ ହେଲା ଯେ ସେ ଜେଲ୍‌ରୁ ଫେରି ବାପାଙ୍କୁ ନମସ୍କାର କରିପାରିଲେନି । ତାଙ୍କ ମନର ବେଦନା କଥା ସେ ନିଜେ ଲେଖିଛନ୍ତି, ଯାହାକି କାରାକବିତା ପୁସ୍ତିକାରେ ପ୍ରକାଶିତ ହୋଇଛି । ତାର କେତେକାଂଶ ଉଲ୍ଲେଖ କରୁଛି ।

''ତରୁଣ ବୟସେ ଯେବେ ବସି ତବପାଶେ
ଲଭିଥିଲି ଜ୍ଞାନାଲୋକ ପ୍ରଥମ ସଞ୍ଚାର,
ସେଦିନୁ ଏ ଯାଏ ସବୁ ସ୍ମୃତି ମନେ ଆସେ
ଶୁଣି ଆଜି ତବ ମୃତ୍ୟୁ ଶୋକ-ସମାଚାର ।''

× × ×

''ଦେଖିଛି ଅନ୍ତରେ ତବ ଥିଲା ଅଗ୍ନିକଣା
ଜଳିଥାନ୍ତା ଲାଗିଥିଲେ ଯଥାକାଳେ ବାୟୁ,
କୁହୁଳି କୁହୁଳି ତାହା ଲିଭିଲା ଅଜଣା
ନିରାଶାର ଉଷ୍ମତାରେ ତରଳିଲା ଆୟୁ ।''

× × ×

''କି ପାଇଁ ପ୍ରଗାଢ଼ ସ୍ନେହ, ଆଦର, ବିଶ୍ୱାସ
ପୋଷିଥିଲ ନିରନ୍ତର ଅନ୍ତରେ ମୋ ପ୍ରତି,
ଅନ୍ତିମ ମୁହୂର୍ତ୍ତେ ମୋର ଦୂର କାରାବାସ
ସୁମରି ପରମବ୍ୟଥା ପାଇଥିବ ଅତି ।''

''ହେଲା ମୋର କାରାଦଣ୍ଡ ଯେବେ ପଡ଼େ ମନେ
ଛିଡ଼ା ହୋଇଥିଲ ଆସି ଦରବାର-ଦ୍ୱାରେ,

ଢଳ ଢଳ କରି ସ୍ନେହ ଲୋତକ-ନୟନେ
ରୁଦ୍ଧ-କଣ୍ଠେ ଆଶାଥିଲା ମୋର ନମସ୍କାରେ ।''
''ଫେରି ଏଠୁ କରିଥାନ୍ତି ପୁଣି ନମସ୍କାର
କହିଥାନ୍ତି ଫେଡ଼ି ମୋର କାରା-ଅନୁଭବ,
କ୍ରୂରବାଳ ଲଗାଇଲା କ୍ଷତେ ମୋର ଖାର
ଘଟାଇଲା ଏ ଦାରୁଣ ଶୋକ ଅଭିନବ ।''
''ମୋ କର୍ଯ୍ୟେ ମମତା ସଦା ଥିଲା ତବପ୍ରାଣେ
ମୋ ବିପଦେ ଭୋଗୁଥିଲ ସ୍ୱଜନ-ବେଦନା,
ନ ଗଲି ଶ୍ମଶାନ ଯାଏ ଅନ୍ତିମ ପ୍ରୟାଣେ
ଚିରଦିନ ରହିଲା ଏ ଗଭୀର ବେଦନା ।''

ମୋ ନନା ଗୋପୀନାଥ ମିଶ୍ର ଭିନ୍ନ ପ୍ରକାରର ଥିଲେ । ଗୋରା ଦପ୍‌ଦପ୍ ଚେହେରା–ସାହେବୀ ପୋଷାକ ଓ ତାଙ୍କର ପ୍ରିୟ ଥିଲା ବହୁ ପ୍ରକାରର ବାଡ଼ି ସେ ରଖୁଥିଲେ । ପୁରୀର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଓକିଲ ଲୋକନାଥ ମିଶ୍ର(ପଙ୍କ ବାବୁ)ଙ୍କଠାରୁ ଶୁଣିବା କଥା–ତାଙ୍କ ବ୍ରତଘରେ ନନା ସାହେବୀ ପୋଷାକରେ ତାଙ୍କ ଗାଁରେ ପହଁଚି ପଂକ୍ତିଭୋଜନରେ ନ ବସି, ଘର ଭିତରେ ଟେବୁଲରେ ଖାଇ ଚହଳ ସୃଷ୍ଟି କରିଥିଲେ ।

ସେମିତି ଥରେ କଲେଜ ହଷ୍ଟେଲକୁ ସେ ଆମକୁ ଦେଖିବାକୁ ଆସିଥିଲାବେଳେ 'ସାହେବ ଆସିଗଲା' ବୋଲି କହି ମୋର ସହପାଠୀ ରାମଚନ୍ଦ୍ର ପଟ୍ଟନାୟକ ଖଟତଳେ ପଶିଯାଇଥିଲେ ।

ନନା ତାଙ୍କ ସମୟର ଅତି ଜଣାଶୁଣା ଲୋକ ଥିଲେ । ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ଲିଙ୍ଗରାଜ ମିଶ୍ର, ଦୈନିକ ଆଶାର ସମ୍ପାଦକ ଶଶିଭୂଷଣ ରଥ, ପ୍ରଚାରକ ଅନନ୍ତ ମିଶ୍ର ପ୍ରମୁଖ ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ଆମ ଘରେ ମୁଁ ସେମାନଙ୍କୁ ବହୁଥର ଦେଖିଛି । ଆଚାର୍ଯ୍ୟ ହରିହର ନନାଙ୍କ ସହପାଠୀ–ସବୁବେଳେ ଯା'ଆସ । ମନେପଡୁଛି ନନାଙ୍କ ଶବଦାହ ବେଳେ 'ମୋର ଶେଷ ବନ୍ଧୁ ଚାଲିଗଲା' ବୋଲି କହି ସେ କାନ୍ଦିଥିଲେ ।

ନନା ସତ୍ୟବାଦୀ ଗୋଷ୍ଠୀର ବନ୍ଧୁ ଓ ସମର୍ଥକ ଥିଲେ । ବ୍ରାହ୍ମଣ ସମାଜ ନିଶ ରଖିପାରିବେ ନା ନାହିଁ– ଏ ବି ଗୋଟାଏ ପ୍ରଶ୍ନ ଯାହାକି ସେତେବେଳେ ପୁରୀ ବ୍ରାହ୍ମଣ ସମାଜରେ ଝଡ଼ ସୃଷ୍ଟି କରିଥିଲା । ତାହା ନିଶ-ଆନ୍ଦୋଳନ ନାମରେ ଖ୍ୟାତ । ଗୋଦାବରୀଶ ମିଶ୍ରଙ୍କ ପରି ନନା ନିଶ ରଖିଥିଲେ ।

ବହୁ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ । କୋପରେଟିଭ ସୋସାଇଟି, ଜିଲ୍ଲା ସ୍କାଉଟ ଆସୋସିଏସନ୍, ଜଗନ୍ନାଥ କ୍ଲବ ପ୍ରଭୃତିର ସଂପାଦକ ଥିଲେ । ଜଗନ୍ନାଥ

କ୍ଲବ ସେତେବେଳେ ପୁରୀର ଖ୍ୟାତନାମା ସାଂସ୍କୃତିକ ଅନୁଷ୍ଠାନ ଥିଲା । ସହରର ନାମଜାଦା ଲୋକେ ଏହାର ପୃଷ୍ଟପୋଷକତା କରୁଥିଲେ । ନିୟମିତଭାବେ ନାଟକ ମଞ୍ଚସ୍ଥହେଉଥିଲା–ମୁଖ୍ୟତଃ ବଙ୍ଗଳାରୁ ଅନୁବାଦିତ, ଅମିତ୍ରାକ୍ଷର ଛନ୍ଦରେ ଲିଖିତ । ସହର-ବାସିନ୍ଦାଗଣ ବିଭିନ୍ନ ନାଟକରେ ବିଭିନ୍ନ ଭୂମିକାରେ ଅଭିନୟ କରୁଥିଲେ । ସେଇଠୁ ପିଲାଦିନୁ ମୁଁ ଓ ଦୁଇ ବଡ଼ଭାଇନା ସଚ୍ଚିଦାନନ୍ଦ ମିଶ୍ର ଓ ବିବେକାନନ୍ଦ ମିଶ୍ରଙ୍କର ଅଭିନୟ କଳାର ପ୍ରଥମ ଅନୁଭୂତି ।

ନନା ଘରେ ଗୋଟିଏ ପ୍ରାଇମେରୀ ସ୍କୁଲ ପ୍ରତିଷ୍ଠା କରିଥିଲେ । କିଛିକାଳ ସେ ଅନରାରୀ ମାଜିଷ୍ଟ୍ରେଟ ଓ ପରେ ଗଡ଼ଜାତରେ ବିଭିନ୍ନ ପଦବୀରେ କାର୍ଯ୍ୟ କରିଥିଲେ । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ସେ ଅତି ବିଶ୍ୱସ୍ତ ଥିଲେ । ମଧୁବାବୁଙ୍କ ଅନୁରୋଧକ୍ରମେ 'ଉତ୍କଳ ଟ୍ୟାନେରୀ'ର ପରିଚାଳନା ଦାୟିତ୍ୱ ନେଇଥିଲେ ।

ମୋ ବୋଉ(ମୁକ୍ତାମାଳା ଦେବୀ) ଆସିଥିଲା ଚିଲିକା ପାରହୋଇ, ପାରଳାଖେମୁଣ୍ଡିର ଚାଙ୍ଗୁଡ଼ି ଶାସନର ନାମଜାଦା ମିଶ୍ର ପରିବାରରୁ ।

ବଡ଼ ପରିବାର, ତା ସାଂଗକୁ ପୁଣି କେହି ନା କେହି ବନ୍ଧୁବାନ୍ଧବ, ଅତିଥି– ବୋଉ ସବୁବେଳେ ଲାଗିଥିବ, କିଏ କ'ଣ ଖାଇବ– ଖାଇଲା କି ନାହିଁ । ମୋତେ କୋଳରେ ବସାଇ ଖୁଆଇଦେବ । ଝରକା ଦୁଆର ବନ୍ଦକରି ବେକକୁ ଚାପିଧରିଥିବ କାଳେ ଉଠିଯିବି ବୋଲି । କେତେ ପୁରାଣ କଥା କହିବ । ମୁହେଁ ମୁହେଁ ଗୀତ ତିଆରି କରି ଗାଇବ, ଉଠିଗଲେ ଚାପିଧରି ଦି'ଅଣି ଦେବ । ଆମେ ଖାଇଦେଲେ ତା'ର ପେଟ ପୂରିଯାଉଥିଲା ଯେମିତି । ଆମ ଭିତରେ ସେ ନିଜକୁ ହଜାଇଦେଇଥିଲା ।

ସେ ଥିଲା ଆଶୁ-କବି । କାଗଜ-କଲମ ଦରକାର ନାହିଁ । ଔପନ୍ୟାସିକ କାଳିନ୍ଦୀଚରଣ ପାଣିଗ୍ରାହୀ ବୋଉର କେତେକ କବିତାକୁ କଟକ ବେତାର କେନ୍ଦ୍ରରୁ ପରିବେଷଣ କରିଥିଲେ ।

## (୨)

## ପୁରୀରେ କଂଗ୍ରେସ ଅଧିବେଶନର ପ୍ରସ୍ତୁତି

୧୯୩୨ ମସିହାରେ ପୁରୀଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ନିମନ୍ତେ ଆୟୋଜନ ଚାଲିଥିଲା । ନୀଳକଣ୍ଠ ଦାସ ଓ ଗୋପବନ୍ଧୁ ଚୌଧୁରୀ ଯଥାକ୍ରମେ ଅଭ୍ୟର୍ଥନା ସମିତିର ସଭାପତି ଓ ସଂପାଦକ ଥିଲେ । ସ୍ୱେଚ୍ଛାସେବକ ବାହିନୀର ମୁଖ୍ୟ ଥିଲେ ହରେକୃଷ୍ଣ ମହତାବ ।

ବଳିଆପଣ୍ଡାରେ କଂଗ୍ରେସ ଛାଉଣୀ ପଡ଼ିଥିଲା ଓ ସ୍ୱେଚ୍ଛାସେବକମାନଙ୍କର ଡ୍ରିଲ ଓ ଅନ୍ୟ କାର୍ଯ୍ୟକଳାପ ଦେଖିବା ପାଇଁ ଆମେ କେତେକ ଛାତ୍ର ଯାଇଥିଲୁ । କିନ୍ତୁ ସେ ଅଧିବେଶନ ହୋଇପାରିଲା ନାହିଁ । ସେତିକିବେଳେ ଗାନ୍ଧିଜୀ ଗୋଲଟେବୁଲ ବୈଠକରୁ ନିରାଶ ହୋଇ ଫେରି ପୁଣି ସତ୍ୟାଗ୍ରହର ଆହ୍ୱାନ ଦେଲେ । ପବନରେ ନିଆଁ ଲାଗିଗଲା । ହଜାର ସଂଖ୍ୟାରେ ମହିଳା ସତ୍ୟାଗ୍ରହରେ ଯୋଗଦେବାପାଇଁ ପଦାକୁ ଚାଲିଆସିଲେ । ହାତରେ ତ୍ରିରଂଗା ପତାକା ଧରି 'ମହାତ୍ମା ଗାନ୍ଧୀକି ଜୟ' ଧ୍ୱନି ଦେଇ । ଶୋଭାଯାତ୍ରାକାରୀଙ୍କର ଶୋଭାଯାତ୍ରା ଓ ସଂଗୀତ, ବିଦେଶୀ-ଦ୍ରବ୍ୟ ଦୋକାନରେ ପିକେଟିଂ, ପୁଲିସର ନିର୍ମମ ଲାଠିମାଡ଼, ଗିରଫଦାରୀ, ସଭାସମିତି ନିତ୍ୟଦିନର କାର୍ଯ୍ୟକ୍ରମ ହେଲା । ''ମାରିବ ଯେତେ ମାର, ଆମେ ମାନିବୁ ନାହିଁ''– ହେଲା ଇଂରେଜ ସରକାରଙ୍କୁ ଚେତାବନୀ ।

ସବୁଦିନ ଏଠି ସେଠି ସଭା । କିଏ କେମିତି କହୁଛି ଶୁଣିବାପାଇଁ ଆମେ ସଭାକୁ ଯାଉଥିଲୁ । କିଏ କେମିତି କହେ– ଲମ୍ଫେଇ, ବଂକେଇ, ଉଚ୍ଚଗଳା ବା ଧୀରସ୍ଥିର ହୋଇ ବା ନାଚିକୁଦି, ସେଇ କଥା ଭିନ୍ନ ଭାଷା ।

ବିଶିଷ୍ଟ ଗାନ୍ଧିବାଦୀ ନେତା ପଣ୍ଡିତ ମିଶ୍ରଙ୍କ ସଭାକୁ ଯାଇଥିଲୁ । ସେ ଗାନ୍ଧିଜୀଙ୍କ ଆଶ୍ରମରେ ଥିଲେ ବୋଲି ଶୁଣିଥିଲି । ହଜାର ସଂଖ୍ୟାରେ ଲୋକ ଉପସ୍ଥିତ, ପଣ୍ଡିତ ମିଶ୍ରଙ୍କର ଜୟକାର ଧ୍ୱନିରେ ସଭାସ୍ଥଳୀ ମୁଖରିତ । ପଣ୍ଡିତ ମିଶ୍ର ଆରମ୍ଭ କଲେ ରାମାୟଣ ଓ ମହାଭାରତର ଉଦାହରଣ ଦେଇ– ''ଭାଇମାନେ, ଦିନ ଥିଲା ଯେତେବେଳେ 'ର' 'ର'କୁ ମାରିଥିଲେ, ଅର୍ଥାତ୍ ରାମ ରାବଣକୁ ମାରିଥିଲେ । ଦିନ ଥିଲା ଯେତେବେଳେ 'କ' 'କ'କୁ ମାରିଥିଲେ, ଅର୍ଥାତ୍ କୃଷ୍ଣ କଂସକୁ ମାରିଥିଲେ । ଆଜି ଦିନ ଆସିଛି ଯେତେବେଳେ 'ଗ' 'ଗ'କୁ ମାରିବ ଅର୍ଥାତ୍ ଗାନ୍ଧୀ ଗଭର୍ଣ୍ଣମେଣ୍ଟକୁ ମାରିବେ । ବିପୁଳ କରତାଳି ଓ ଜୟଧ୍ୱନିରେ ଉତ୍ତେଜିତ ପଣ୍ଡିତ ମିଶ୍ର କହିଚାଲିଲେ– ''ଭାଇମାନେ, ଏ ଚରଖା ହେଉଛି ସୁଦର୍ଶନ ଚକ୍ର– କହୁଛି ଇଂରେଜ ଶୁଣ, ଏ ଦେଶରୁ ଚାଲିଯାଅ ନଚେତ୍ ଏ ତାକୁଡ଼ି ସୂତାରେ ତୁମର ହାତ ବନ୍ଧାହେବ ଓ ତାକୁଡ଼ି ମୁନରେ ତୁମର ଗାଂଡ଼ି ଫୋଡ଼ାହେବ ।''

ରାମଙ୍କ ଧନୁ, କୃଷ୍ଣଙ୍କ ଚକ୍ର ଓ ଗାନ୍ଧିଜୀଙ୍କ ଚରଖାର ସମନ୍ୱୟ । ଶ୍ରୋତାଙ୍କ ମନକୁ ପାଇଗଲା, ସମସ୍ତେ ଛିଡ଼ାହୋଇ ନାଚିଲେ । କି ଅଦ୍ଭୁତ ଦୃଶ୍ୟ ପ୍ରତୀୟମାନ ହେଲା–ଇଂରେଜମାନେ ଧାଡ଼ିବାନ୍ଧି ଛିଡ଼ାହୋଇଛନ୍ତି, ସୂତାରେ ହାତ ବନ୍ଧା ହୋଇଛି, ପଣ୍ଡିତ ମିଶ୍ର ତାକୁଡ଼ିରେ ଗାଂଡି ଫୋଡ଼ି ଚାଲିଛନ୍ତି । ଶୁଣାଯାଉଛି ଇଂରେଜ ସରକାରର ବିକଳ କ୍ରନ୍ଦନ ।

'ଗାଂଡି' ଶବ୍ଦ କ'ଣ ଅଶ୍ଳୀଳ ? ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀରେ ଗୋଟିଏ ଘଟଣା ବର୍ଣ୍ଣନା କରିଛନ୍ତି । ଗୋପବନ୍ଧୁବାବୁ ଓ ବଡ଼ମ୍ବାର ଲୋକନାଥ ପଟ୍ଟନାୟକ ସହପାଠୀ ଓ ପରସ୍ପରର ଘନିଷ୍ଠ ବନ୍ଧୁ । ଛାତ୍ରଜୀବନରୁ ଉଭୟେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ଥିଲେ, କିନ୍ତୁ ଉଭୟେ ବି.ଏ. ପରୀକ୍ଷାରେ ଓଡ଼ିଆରେ ଫେଲ୍ ହୋଇଯିବାରୁ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଭକ୍ତକବି ମଧୁସୂଦନ ରାଓ ପରୀକ୍ଷକ । ତାଙ୍କୁ ପଚାରିବାରୁ ସେ ଲୋକନାଥବାବୁଙ୍କ ଉତ୍ତରଖାତା ଦେଖାଇଲେ । ଲୋକନାଥ ବାବୁ କୃଷ୍ଣ ସିଂହ ମହାଭାରତରୁ ଉଦ୍ଧାର କରିଥିଲେ–

''ସଭାରେ ବସିଛନ୍ତି କର୍ପୂର ମାଳିଆ<br>ଗାଂଡିଟାମାନ ତାଙ୍କର ଯେସନେ ଓଳିଆ ।''

କି ଅଶ୍ଳୀଳ– ତା ଲୋକନାଥବାବୁଙ୍କ କାଳ ହେଲା । ଗୋପବନ୍ଧୁବାବୁ ଫେଲ୍ ହେଲେ । କାରଣ ୫୦ନମ୍ବରରେ ପାସ୍ ବୋଲି ପରୀକ୍ଷକ ଜାଣିନଥିଲେ ।

ଲବଣ-ସତ୍ୟାଗ୍ରହର ପୁନରାରମ୍ଭ । ଛାତ୍ରମାନଙ୍କ ମଧ୍ୟରେ ଅସୀମ ଉଦ୍ଦୀପନା । ପୁରୀ ଜିଲ୍ଲା ସ୍କୁଲପଡ଼ିଆ ସଭାରେ ଛାତ୍ର ସୋମନାଥ ନନ୍ଦ ଲଂଫ ମାରି ଟେବୁଲ ଉପରେ ଛିଡ଼ାହୋଇ କହିଲେ– ''ମୋଟରଗାଡ଼ିମାନ ଚାଲିବାରୁ ଶଗଡ଼ଗାଡ଼ିମାନ ବନ୍ଦ ହୋଇଗଲା ହୋ ଭାଇମାନେ ।'' ମୋଟରଗାଡ଼ିର ଧକ୍କାରେ ଶଗଡ଼-ଚକ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯିବାର ଦୃଶ୍ୟ ପ୍ରତୀୟମାନ ହେଲା । 'ଭାଂଗ ମଟରଗାଡ଼ି' ବୋଲି ଚିତ୍କାର କରି ଛାତ୍ରଗଣ ରାସ୍ତାରେ ଧାଇଁଲେ ।

(୩)

## ଭଗବତୀଚରଣ ପାଣିଗ୍ରାହୀ

୧୯୩୫ ମସିହାରେ ପୁରୀକୁ ଆସିଲେ ଭଗବତୀ ଚରଣ ପାଣିଗ୍ରାହୀ– କଂଗ୍ରେସ ସୋସିଆଲିଷ୍ଟ ପାର୍ଟିର ସଂପାଦକ, କମ୍ୟୁନିଷ୍ଟ ପାର୍ଟିର ଚିନ୍ତାନାୟକ, 'କମ୍ୟୁନିଷ୍ଟ ମାନିଫେଷ୍ଟୋ'ର ଅନୁବାଦକ, କୃଷକ ଆନ୍ଦୋଳନର ପ୍ରବକ୍ତା, 'ଆଧୁନିକ' ଓ 'ମୁକ୍ତିଯୁଦ୍ଧ' ପତ୍ରିକାର ସଂପାଦକ, ଆଦର୍ଶରେ ରଙ୍ଗିନ, ମନୋବଳରେ ବଳୀୟାନ, ସାଧନାରେ ଅତୁଳନୀୟ, ସଂଗ୍ରାମରେ ଅଟଳ ।

ସେତିକିବେଳେ ବି.ଏ.ଓ ବି.ଏସ୍‌ସି. ପରୀକ୍ଷା ଦେଇସାରି ପୁରୀରେ ପହଞ୍ଚିଲେ ଅଶୋକଦାସ, ବୈଦ୍ୟନାଥ ରଥ, କବି ଅନନ୍ତ ପଟ୍ଟନାୟକ ଓ ତାଙ୍କ ସାନଭାଇ ଗୁରୁଚରଣ ପଟ୍ଟନାୟକ ଭଗବତୀବାବୁଙ୍କ ସଂଗ୍ରାମୀ ସାଥୀଗଣ ।

ଭଗବତୀବାବୁଙ୍କ ବଡ଼ଭାଇନା ଦିବ୍ୟସିଂହ ପାଣିଗ୍ରାହୀ ପୁରୀରେ ଓକିଲାତି କରୁଥିଲେ । ନନାଙ୍କ ସହିତ ତାଙ୍କର ବନ୍ଧୁତା ଥିଲା । ସେ ଜଣେ ଲେଖକ ଭାବରେ ସୁପରିଚିତ ଥିଲେ ଏବଂ ମୋ ବଡ଼ଭାଇନା ସଚ୍ଚିଦାନନ୍ଦ ମିଶ୍ରଙ୍କ ବାହାଘରର ବରଯାତ୍ରୀ ରୂପେ ତାଙ୍କ ଅନୁଭୂତି ବିଷୟରେ "ମୋ ବାହାଘର" ନାମକ ଏକ ଗଳ୍ପ ଲେଖିଥିଲେ । ତାଙ୍କର ଅନ୍ୟ ଭାଇନା ପ୍ରସିଦ୍ଧ ଔପନ୍ୟାସିକ କାଳିନ୍ଦୀ ଚରଣ ପାଣିଗ୍ରାହୀ ପୁରୀ କୋଅପରେଟିଭ ବ୍ୟାଙ୍କରେ କାର୍ଯ୍ୟକରୁଥିଲେ । ସେତେବେଳେ ମୋ ନନା ବ୍ୟାଙ୍କ୍‌ର ସେକ୍ରେଟାରୀ ଥିଲେ ।

ମୋର ଦଶମ ଶ୍ରେଣୀ । ନନାଙ୍କୁ କହି ଭଗବତୀବାବୁ ମୋତେ ପଢ଼ାଇବାର ଦାୟିତ୍ୱ ନେଲେ । ଆମ ଘର ପାଖରେ ତାଙ୍କ ଘର । ଆସ୍ତେ ଆସ୍ତେ ସେଠି ଆସି ପହଞ୍ଚିଲେ ସୁରେଶ ଚନ୍ଦ୍ର ମିଶ୍ର, ବନମାଳୀ ପଟ୍ଟନାୟକ, ଭଗବାନ ପଡ଼ିଆରୀ, ଜୟକୃଷ୍ଣ ମହାନ୍ତି, ଲୋକନାଥ ରାୟ ପ୍ରଭୃତି ଅନ୍ୟ କେତେକ ଛାତ୍ର ଓ ଯୁବକ ।

ନିୟମିତ ଭାବେ କ୍ଲାସ ଚାଲିଲା । ସ୍କୁଲ ପାଠ ସହିତ ତା'ର କୌଣସି ସଂପର୍କ ନଥିଲା । ସେ ଥିଲା ଇତିହାସ ଦିଗ୍‌ଦର୍ଶନର ଶିକ୍ଷା । କେତେ ଶହ ଗୋରାଙ୍କ ବନ୍ଧନରେ କୋଟି ସଂଖ୍ୟାରେ ଭାରତବାସୀଙ୍କ ବନ୍ଧନକୁ ଭାଙ୍ଗିବା ପାଇଁ ଇତିହାସ କି ଶିକ୍ଷା ଦେଇଛି, କି ସାହିତ୍ୟ ସେ ଯାହା ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ରଣଦୁନ୍ଦୁଭି ନ ବଜାଇଛି । କି ଜୀବନ ସେ ଯେଉଁଥିରେ ନାହିଁ ସମବେଦନା, ପ୍ରକମ୍ପନ ଓ ଆତ୍ମବଳିର ଅହଂକାର ? ପୃଥିବୀର କୋଣେ କୋଣେ, ଇତିହାସର ଛତ୍ରେ ଛତ୍ରେ'ଇନ୍‌କିଲାବ ଜିନ୍ଦାବାଦ'ର ଧ୍ୱନିରେ ବାୟୁମଣ୍ଡଳ ପ୍ରକମ୍ପିତ ହୋଇଛି—ଅବସାନ ଘଟିଛି ଅତ୍ୟାଚାରୀ ରାକ୍ଷସର ।

ସେତେବେଳେ ବଙ୍ଗଳାର ବିପ୍ଳବୀ ସତ୍ୟେନ୍‌ଦା ପୁରୀରେ ଅନ୍ତରୀଣ ବନ୍ଦୀ ରୂପେ ଥିଲେ । ଆମେ ଗୋପନରେ ତାଙ୍କ ସହିତ ସାକ୍ଷାତ କରୁଥିଲୁ । 'ବନ୍ଧୁକ ଧର' ବୋଲି ସେ ଆମକୁ ଉପଦେଶ ଦେଉଥିଲେ । ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି ବିଶିଷ୍ଟ ସମାଜବାଦୀ ନେତା ଆଚାର୍ଯ୍ୟ ନରେନ୍ଦ୍ର ଦେବ ପୁରୀ ଆସିଥିଲେ । ସେ ଆମକୁ 'ସମାଜବାଦୀ' ନୀତି ଓ ନିୟମ ବୁଝାଇଥିଲେ ।

ଇଂରେଜ ଶାସନ ବିରୁଦ୍ଧରେ ଜନମତ ସୃଷ୍ଟିପାଇଁ ଗୋପନରେ ପ୍ରଚାରପତ୍ର ବାଣ୍ଟିବା ଆମର କାମ ଥିଲା । ଗୋଟିଏ ଲିଥୋ-ମେସିନ୍ ଆମର ସମ୍ବଳ । ଗୁଇନ୍ଦା ପୁଲିସର ନଜର ଏଡ଼ିହେଲାନାହିଁ । କିଏ ଯେମିତି ସବୁବେଳେ ପଛେ ପଛେ ଚାଲିଛି ବୋଲି ମନେହେଲା । ଘର ଖାନତଲାସି ଆଶଙ୍କା କରି ଲିଥୋ ମେସିନ୍ ନେଇ କେଉଁଠି ଲୁଚାଇ ଦେବାକୁ ଭଗବତୀବାବୁ ମତେ କହିଲେ । ପୁରୀ ଜଗନ୍ନାଥବଲ୍ଲଭ ମଠର ମ୍ୟାନେଜର କ୍ଷେତ୍ରମୋହନ ମହାନ୍ତିଙ୍କ ପୁଅ ରଘୁନାଥ ମହାନ୍ତି ବିବେକା ଭାଇନାଙ୍କ ସହପାଠୀ ଓ ବନ୍ଧୁଥିଲେ । ରାତ୍ରିର ଅନ୍ଧକାରରେ ତାଙ୍କ ସାହାଯ୍ୟରେ ମଠ ବଗିଚାରେ

ଲିଥୋ-ମେସିନ୍-ଲୁଚାହେଲା । ତା'ର ଅଳ୍ପ ବେଳ ପରେ ଭଗବତୀବାବୁଙ୍କ ଘର ଖାନତଲାସି ହେଲା । କିଛି ମିଳିଲା ନାହିଁ–ପୁଲିସ୍ ନିରାଶ ହୋଇ ଫେରିଗଲେ ।

ଜାଗା ବଦଳାଇବାକୁ ହେବ । ଏହି ସମୟରେ ବଡ଼ଦାଣ୍ଡର ଜଣେ ହୋଟେଲ ମାଲିକ ଦୁଇମାସ ପାଇଁ ତାଙ୍କ ଗାଁକୁ ଗଲେ, ଆମକୁ ହୋଟେଲ ପରିଚାଳନାର ଦାୟିତ୍ୱ ଦେଇ । କିଛିଦିନ ବଇଦାଭାଇନା ଓ କିଛିଦିନ ସୁରେଶ ମିଶ୍ର ମ୍ୟାନେଜର ଦାୟିତ୍ୱ ତୁଲାଇଲେ ।

ପରେ, ୧୯୪୦ ମସିହାରେ 'କମ୍ୟୁନିଷ୍ଟ ପଡ଼ ମନ୍ତ୍ର' ମକଦ୍ଦମାରେ ଭଗବତୀ ବାବୁ, ଅନନ୍ତ ବାବୁ ଓ ତାଙ୍କ ସାନଭାଇ ଗୁରୁଚରଣ ବାବୁ, ଶରତ ପଟ୍ଟନାୟକ, ବନମାଳୀ ଦାସ, ଦୁର୍ଗାଚରଣ ମହାନ୍ତି ପ୍ରମୁଖ ଗିରଫ ହେଲେ । ଭଗବତୀ ବାବୁଙ୍କୁ ଦୁଇବର୍ଷ କାରାଦଣ୍ଡ ଆଦେଶ ହେଲା । ଦୁଇବର୍ଷ ପରେ ଭଗ୍ନଶରୀର ଧରି ସେ ଖଲାସ ହେଲେ । ସେତେବେଳକୁ ଓଡ଼ିଶାରେ ଦୁର୍ଭିକ୍ଷର କରାଳ ଚିତ୍ର । ଓଡ଼ିଶାରୁ ବଙ୍ଗଳାକୁ ଧାନ ରପ୍ତାନୀ ଚାଲିଥାଏ । ରପ୍ତାନୀ ବିରୁଦ୍ଧରେ ଆନ୍ଦୋଳନ ଚାଲିଲା । କୌଣସି ବାରଣ ନ ମାନି ଭଗବତୀବାବୁ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ବୁଲିଲେ । ଦେହ ସହିଲା ନାହିଁ, ଆମାଶୟ ରୋଗରେ ପୀଡ଼ିତ ହୋଇ ସେ କଟକ ବଡ଼ ଡାକ୍ତରଖାନାକୁ ବୁହାହେଲେ । ସାଲାଇନ ମିଳିଲା ନାହିଁ । ୧୯୪୩ ମସିହା ଅକ୍ଟୋବର ୨୩ତାରିଖରେ ତାଙ୍କର ମହାପ୍ରୟାଣ ହେଲା ।

ସନ୍ୟାସୀ ଭଗବତୀ, ସଂଭ୍ରାନ୍ତ ପରିବାରରେ ଜନ୍ମ, ପାଟଣା ବିଶ୍ୱବିଦ୍ୟାଳୟରୁ ଅର୍ଥନୀତି-ଶାସ୍ତ୍ରରେ ଏମ୍.ଏ. ପାସ୍ କରିଥିଲେ । ବିବାହକରିଥିଲେ, ପିତା ହୋଇଥିଲେ, ସବୁ ପଛରେ ରହିଗଲା । ତାଙ୍କ ମୃତ୍ୟୁବେଳେ ମୁଁ ବ୍ରହ୍ମପୁର ଜେଲରେ ଥିଲି ଅଟକ-ବନ୍ଦୀ । ମହାଶୂନ୍ୟକୁ ଚାହିଁ ତାଙ୍କୁ ନମସ୍କାରକଲି ।

ସତ୍ୟେନଦା'ଙ୍କ କଥା । ବହୁକାଳପରେ ଦିନେ କଟକ ରେଲ୍-ଷ୍ଟେସନରେ ତାଙ୍କ ସହିତ ଦେଖାହେଲା, ଭାରି ଖୁସୀ ହେଲେ, କେତେ କଥା ପଚାରିଲେ । ଆଉ ତାଙ୍କ କଥା– ଇତିମଧ୍ୟରେ ସେ ବିବାହ କରିଛନ୍ତି ଓ ବୀମା କଂପାନୀର ଏଜେଣ୍ଟ ହୋଇଛନ୍ତି ବୋଲି ଜାଣିଲି ।

## (୪)

## ରେଭେନ୍‌ସା କଲେଜରେ ମୋର ଯୋଗଦାନ

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର-ପ୍ରଦେଶ ହେଲା । ସେହିବର୍ଷ ମୁଁ ମାଟ୍ରିକୁଲେସନ ପାସ୍ କଲି । ସେତେବେଳକୁ ରେଭେନ୍ସା କଲେଜ ଓଡ଼ିଶାର ଏକମାତ୍ର

ଡିଗ୍ରୀ କଲେଜ ଏବଂ ତାହା ପାଟଣା ବିଶ୍ୱବିଦ୍ୟାଳୟର ଅଧୀନସ୍ଥ ଥିଲା । ଖଲ୍ଲିକୋଟ, ପାରଳାଖେମୁଣ୍ଡି ଓ ରେଭେନ୍ସା ବାଳିକା ବିଦ୍ୟାଳୟରେ ଆଇ.ଏ.ପର୍ଯ୍ୟନ୍ତ ପାଠ୍ୟକ୍ରମ ଥିଲା । ସଚ୍ଚିଭାଇନା କଲିକତାରୁ ଆଇ.ଏ. ପାସ୍ କରି ଆସିଥାନ୍ତି । ଆମେ ତିନିଭାଇ ରେଭେନ୍ସା କଲେଜରେ ଯୋଗଦେବୁ ବୋଲି ନନା ସ୍ଥିର କରିଥାନ୍ତି । ବୋଉ ମୋତେ ଛାଡ଼ିବାକୁ ନାରାଜ– କେମିତି ଖାଇବି ବୋଲି ତା'ର ଚିନ୍ତା । ସବୁବେଳେ କାନ୍ଦ କାନ୍ଦ ମୁହଁ । ମୋ ମାମୁ ରମେଶ ଚନ୍ଦ୍ର ମିଶ୍ର ପୁରୀ ଆସିଥିଲେ । କିପରି ଗୁଂଡା ବଳି ଖାଇବାକୁ ହୁଏ ମୋତେ ଶିଖାଇଲେ । ସର୍ତ୍ତ ହେଲା ଯେ ପ୍ରତି ଶନିବାର ଦିନ ପୁରୀ ଯିବି– ଶେଷରେ ବହୁତ କଷ୍ଟରେ ବୋଉ ରାଜିହେଲା ।

ଆମେ ତିନିଭାଇ ପଶ୍ଚିମ-ଛାତ୍ରାବାସରେ ରହିଲୁ । ବହୁବର୍ଷ ତଳ କଥା । ୪ବର୍ଷର ଛାତ୍ରାବାସର ସାଥୀମାନଙ୍କ ମଧ୍ୟରୁ କେତେ ନାଁ ମନେପଡୁଛି, କେତେ ନାହିଁ ।

ଆମ ପରି ଆଉ ତିନିଭାଇ ଥିଲେ । ଭଦ୍ରକର ମନୀନ୍ଦ୍ର, ଜ୍ଞାନେନ୍ଦ୍ର ଓ ମହେନ୍ଦ୍ର କୁମାର ରାଉତ ଏବଂ ପୁରୀର ମହେଶ୍ୱର, ବିଶ୍ୱେଶ୍ୱର ଓ ସର୍ବେଶ୍ୱର ଦାସ । ଦୁଇଭାଇଙ୍କ ସଂଖ୍ୟା କିଛି କମ୍ ନୁହେଁ । ସେମାନେ ହେଲେ–ସମ୍ବଲପୁରର ଲଳିତକୁମାର ଓ ପ୍ରଫୁଲ୍ଲକୁମାର ପତି, ଅଶ୍ୱିନୀକୁମାର ଓ ବିଚିତ୍ରାନନ୍ଦ ପୂଜାରୀ, ବାରିପଦାର ସୀତାକାନ୍ତ ଓ କାମିନୀକାନ୍ତ ପଟ୍ଟନାୟକ, ଭଦ୍ରକର ନିର୍ମଳ ଓ ଅଖିଳ ଦେ, ଯାଜପୁରର ନିକୁଞ୍ଜବିହାରୀ ଓ ରାହାସ ବିହାରୀ ପଟ୍ଟନାୟକ, ପୁରୀର ଶ୍ରୀପାଳ ଓ ଜୟପାଳ ଜୀ, ନୀଳମଣି ଓ କୁଳମଣି ପଣ୍ଡା, କଳାହାଣ୍ଡିର ଶ୍ରୀଧର ଓ ବଳରାମ ପାଟଯୋଶୀ । ଅନ୍ୟ ଅନ୍ତେବାସୀଗଣ ହେଲେ– ଶରତ ଚନ୍ଦ୍ର ପରିଜା, ଭବକୃଷ୍ଣ ମହାନ୍ତି, ନୀଳମଣି ମହାନ୍ତି, ସୁନୀଲ ଘୋଷ, ଗଙ୍ଗାଧର ମହାପାତ୍ର, ଭୁବନାନନ୍ଦ ପଟ୍ଟନାୟକ, ପଦ୍ମନାଭ ସାହୁ, ବ୍ରଜମୋହନ ପଣ୍ଡା, ନାରାୟଣ ଚାନ୍ଦ, ଉମାକାନ୍ତ ମିଶ୍ର, ବସନ୍ତ କୁମାର ମହାନ୍ତି, ପ୍ରଫୁଲ୍ଲ କୁମାର ପଟ୍ଟନାୟକ, ମନମୋହନ ମିଶ୍ର, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଉଦୟନାଥ ମହାନ୍ତି, ଭାସ୍କର ରଥ, ବିଧୁଭୂଷଣ ଦାସ, ଗୋବିନ୍ଦ ଚନ୍ଦ୍ର ମିଶ୍ର, ଗିରିଜା ଶଙ୍କର ବହିଦାର, ବିଭୂତି ଭୂଷଣ ତ୍ରିପାଠୀ, କୁଞ୍ଜବିହାରୀ ପଣ୍ଡା, ଶ୍ରୀରାମଚନ୍ଦ୍ର ଦାସ, ଇନ୍ଦୁଭୂଷଣ ମିଶ୍ର, ଉଦୟନାଥ ମିଶ୍ର, ମନମୋହନ ମିଶ୍ର, ଶ୍ରୀନିବାସ ମିଶ୍ର, ଶତ୍ରୁଘ୍ନ ନାଥ, ଭୁବନେଶ୍ୱର ବେହେରା, ଦାମୋଦର ଛୋଟରାୟ, ରାମକୃଷ୍ଣ ପାଢ଼ୀ, ଶ୍ରୀରାମଚନ୍ଦ୍ର ମହାନ୍ତି, ରାମଚନ୍ଦ୍ର ପଟ୍ଟନାୟକ, ରଘୁନାଥ ଦାସ, ଅଦ୍ୱୈତ କୁମାର ଦାସ, ବସନ୍ତ ବଳ, ରତିକାନ୍ତ ପାଢ଼ୀ, ଗୋବିନ୍ଦଚନ୍ଦ୍ର ମିଶ୍ର, ମହମ୍ମଦ ହ୍ୟାଫିଜ, ଉପେନ୍ଦ୍ର ସାମଲ, ଗୋବିନ୍ଦ ରଥ, ପର୍ଶୁରାମ ପଟ୍ଟନାୟକ, ସୁରଜ୍‌ମଲ ସାହା, ଗଣେଶ୍ୱର ମିଶ୍ର, ରାମହରି ରଥ, ଫକୀର ଚରଣ ଦାସ, ଦୁର୍ଗା ଚରଣ ମହାନ୍ତି, କୃଷ୍ଣ ପଟ୍ଟନାୟକ, ସୁଧାଂଶୁ ମୋହନ ପଟ୍ଟନାୟକ, ହରିହର ମିଶ୍ର, ଯଦୁମଣି ଦାସ, ଯାମିନୀ ମୋହନ ଦାସ, ବଳରାମ ମିଶ୍ର, ଶଶିଭୂଷଣ ମହାନ୍ତି, ମନମୋହନ ପଟ୍ଟନାୟକ, ଭୁବନାନନ୍ଦ ପଟ୍ଟନାୟକ, ସାମସୁଲ ହୋଦା ପ୍ରଭୃତି ।

ମୁଁ ଛାତ୍ରବାସରେ ରହିଲାବେଳକୁ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ୱାର୍ଡେନ୍ ଥିଲେ– ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ପର୍ଶୁରାମ ମିଶ୍ର ଓ ତାଙ୍କ ସହକାରୀ ଥିଲେ ଅଧ୍ୟାପକ ବି.ଏନ୍.ରୋହତ୍‌ଗୀ । କେତେମାସ ପରେ ପରିଜା ସାହେବ କଲେଜର ଅଧ୍ୟକ୍ଷ ହେଲାପରେ ଅଧ୍ୟାପକ ବଳଭଦ୍ର ପ୍ରସାଦ ୱାର୍ଡେନ୍ ହେଲେ । ପରେ ଅଧ୍ୟାପକ ଘନଶ୍ୟାମ ଦାସ ସୁପରିନ୍‌ଟେଣ୍ଡେଣ୍ଟ ହେଲେ । ଛାତ୍ରାବାସର ସାଧାରଣ ସଂପାଦକ ଥିଲେ ଶରତ୍ ଚନ୍ଦ୍ର ପରିଜା ଓ ତାଙ୍କ ପରେ ଗଙ୍ଗାଧର ମହାପାତ୍ର ।

ଛାତ୍ରାବାସରେ ଡିବେଟିଂ ସୋସାଇଟି ଥିଲା । ପୂର୍ବ ଛାତ୍ରାବାସର ବନ୍ଧୁଗଣ ମଧ୍ୟ ସେଥିରେ ଯୋଗଦେଉଥିଲେ । ଆଇ.ସି.ଏସ୍. ଅଫିସର ଡିକ୍ସନ୍ ସାହେବ ଦୁଇ ଛାତ୍ରାବାସକୁ ଦୁଇଟି 'ପିଙ୍ଗ୍‌ପଙ୍ଗ୍' ଟେବୁଲ ଉପହାର ଦେଇଥିଲେ । ସବୁ ଖେଳ ଭିତରୁ ତାହା ଥିଲା ମୋର ପ୍ରିୟ । ୧୯୩୯-୪୦ ମସିହାରେ ମୁଁ ଚମ୍ପିଆନ ହୋଇଥିଲି । ବ୍ରିଜ ଓ କ୍ୟାରମ୍ ଖେଳରେ ମଧ୍ୟ ବହୁ ଛାତ୍ର ଭାଗନେଉଥିଲେ । ଫୁଟବଲ, ହକି, ଟେନିସ୍, ବ୍ୟାଡ଼ମିଣ୍ଟନ, ଭଲିବଲ–ଯିଏ ଯାହା ଖେଳିବ ।

ଛାତ୍ରାବାସରୁ 'ଊର୍ମି' ନାମକ ଏକ ତ୍ରୈମାସିକ ହାତଲେଖା ପତ୍ରିକା ପ୍ରକାଶିତ ହେଉଥିଲା । ବାର୍ଷିକ ବଜେଟ୍ ୨୦ଟଙ୍କା । ମୁଁ ତା'ର ସଂପାଦକ ଥିଲାବେଳେ ଛପା ହେବାର ବ୍ୟବସ୍ଥା କରିଥିଲି ।

ଦୟାନିଧି ମିଶ୍ର ଥିଲେ ମେସ୍-ମ୍ୟାନେଜର । ସବୁବେଳେ ରୋଷେଇଘରେ ବସି ରୁଚିକର ଖାଦ୍ୟର ବରାଦ୍ କରୁଥିଲେ । ଭାଇନାଙ୍କ ଜୟଜୟକାରରେ ଖୁସିହୋଇ ସେ ଅଧିକା କିଛିକାଳ ଛାତ୍ର ହୋଇ ରହିଗଲେ ।

ଏମାନଙ୍କ ମଧ୍ୟରୁ ଅନେକେ ପରବର୍ତ୍ତୀ ସମୟରେ ଓଡ଼ିଶାର ରାଜନୀତିକ, ସାଂସ୍କୃତିକ, କଳା, ଶାସନ, ଶିକ୍ଷା ପ୍ରଭୃତି କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିଲେ । କେତେ ଗଲେଣି, ଯିଏ ଅଛନ୍ତି ସେ କେଉଁଠି ? ବହୁତ ସମୟରେ ମନେପଡ଼େ ସେଦିନର ମୁହଁ । ସବୁ ଆଖିଆଗରେ ନାଚିଯାଏ, ପରସ୍ପର ସହିତ ସାକ୍ଷାତ ପାଇଁ ମନ ଚଞ୍ଚଳ ହୁଏ । ଏମିତି ଆଜିକାଲିହୋଇ ଦିନ ଗଡ଼ିଯାଏ ।

## (୫)

## କଲେଜ ଜୀବନର କେତେକ ସ୍ମୃତି

କଲେଜ ଅଧ୍ୟକ୍ଷ ଶ୍ୟାମାପଦ ତ୍ରିପାଠୀ ଅତି ଉଦାର ପ୍ରକୃତିର ଓ ଛାତ୍ରବତ୍ସଳ ଥିଲେ । ଛାତ୍ରଙ୍କ ଚିତ୍ତବିନୋଦନ ନିମନ୍ତେ ସେ ତାଳଦଣ୍ଡା କେନାଲରେ ୨-୩ଟି ମଟରବୋଟର



ରାଜ୍ୟସଭାର ସଭ୍ୟ

*ପୂର୍ବ ପୃଷ୍ଠାର ଫଟୋର ପରିଚୟ :*

ବସିଛନ୍ତି (ବାମରୁ ଡାହାଣକୁ) ପ୍ରଫେସର ନାରାୟଣ ମିଶ୍ର, ଡି.ପି.ଆଇ. ଶ୍ୟାମାପଦ ତ୍ରିପାଠୀ, ଡକ୍ଟର ପ୍ରାଣକୃଷ୍ଣ ପରିଜା, ପ୍ରିନ୍‌ସିପାଲ୍, ରେଭେନ୍‌ସା କଲେଜ ଓ ପ୍ରଫେସର ଘନଶ୍ୟାମ ଦାସ । (ଠିଆ ହୋଇଛନ୍ତି) ବି.ଏ. ଡିଗ୍ରୀ ପାଇଥିବା ସ୍ନାତକଗଣ (ପାଟନା ବିଶ୍ୱବିଦ୍ୟାଳୟରୁ– ୧୯୪୧ରେ) ଡାହାଣରୁ ଦ୍ୱିତୀୟ ବିବୁଧେନ୍ଦ୍ର ମିଶ୍ର ।

ବ୍ୟବସ୍ଥା କରିଥିଲେ । ଆମେ ସେଥିରେ ବାଲିଯାତ୍ରା ପଡ଼ିଆକୁ ମଧ୍ୟ ଯାଇଛୁ । ମଟରବୋଟ ଯୋଗୁ ରାତିରେ ଡେରିରେ ଫେରିବାରୁ ପ୍ରଫେସର ରୋହତ୍‌ଗୀ ବଡ଼ ରାଗିଲେ । ଏତଦ୍ୱାରା ଛାତ୍ରାବାସର ନିୟମ ଓ ଶୃଙ୍ଖଳା ଭଂଗ ହେଉଛି ବୋଲି ଅଭିଯୋଗ କଲେ । ସବୁଠୁ ମୋ ଉପରେ ବେଶି ବିରକ୍ତ, ମୁଁ ମୁହେଁ ମୁହେଁ ଜବାବ ଦେଉଛି ବୋଲି । ମୁଁ ସବୁ ଗୋଳମାଳର ମୂଳ ବୋଲି ମତେ ଧମକ ଦେଲେ । ତାଙ୍କ ଭୟରେ ମୁଁ ଅର୍ଥଶାସ୍ତ୍ର କ୍ଲାସ୍‌ରେ ଯୋଗଦେଲି ନାହିଁ । ପରେ ସେ ଆଇ.ଏ.ଏସ୍. ଅଫିସର ହୋଇ ବିହାର ଚାଲିଗଲେ । ବହୁବର୍ଷପରେ ମୁଁ କେନ୍ଦ୍ର-ମନ୍ତ୍ରୀ ଥିବା ସମୟରେ ପାଟଣା ଯାଇଥିଲି । ସେ ଥିଲେ ପାଟଣାର କମିସନର୍ । ମୋତେ ସାଙ୍ଗରେ ନେବାକୁ ରେଳଷ୍ଟେସନକୁ ଆସିଥିଲେ । ଭାରି ଖୁସୀ, କେତେ ଆଦର, ମୁଁ ତାଙ୍କ ଛାତ୍ର ବୋଲି ସମସ୍ତଙ୍କୁ ଚିହ୍ନାଇଦେଲେ । ପୁଣି ରେଳଷ୍ଟେସନକୁ ଆସିଥିଲେ ମୋତେ ଛାଡ଼ିବାପାଇଁ । ତା'ପରେ ତାଙ୍କ ସହିତ ଆଉ ମୋର ଦେଖା ହୋଇନି ।'ସାର୍' ଚାଲିଗଲେ ବୋଲି ପରେ ଖବର ପାଇଲି ।

ରେଭେନ୍ସା କଲେଜରେ ଇଂରେଜୀ-ବିଭାଗର ଅଧ୍ୟାପକଗଣ ହେଲେ କେ. ପି. ସିହ୍ନା, ନିରଞ୍ଜନ ନିୟୋଗୀ, କୃତ୍ତିବାସ ସାମନ୍ତରାୟ, ଯଜ୍ଞେଶ୍ୱର ମହାନ୍ତି, ଗିରିଜା ଶଙ୍କର ରାୟ, ନାରାୟଣ ଦେ, ପି.ଏସ୍.ସୁନ୍ଦରମ୍; ରସାୟନ ବିଭାଗରେ ବଳଭଦ୍ର ପ୍ରସାଦ, ଲୋକନାଥ ମିଶ୍ର, ଗୁରୁଚରଣ ମହାନ୍ତି; ପଦାର୍ଥ ବିଜ୍ଞାନରେ ନାରାୟଣ ମିଶ୍ର, ବ୍ରହ୍ମାନନ୍ଦ ମିଶ୍ର; ଦର୍ଶନ ବିଭାଗରେ ବିପିନ ବିହାରୀ ରାୟ, ରତ୍ନାକର ପତି; ଅର୍ଥଶାସ୍ତ୍ର ବିଭାଗରେ ବି.ଏନ୍. ରୋହତ୍‌ଗୀ, ସଦାଶିବ ମିଶ୍ର; ଇତିହାସ ବିଭାଗରେ ନିର୍ମଳ ଚନ୍ଦ୍ର ବାନାର୍ଜୀ, ଘନଶ୍ୟାମ ଦାସ, ଜଗଦାନନ୍ଦ ମହାନ୍ତି; ଉଦ୍ଭିଦ ବିଜ୍ଞାନରେ ପର୍ଶୁରାମ ମିଶ୍ର, ବଂଶୀଧର ସାମନ୍ତରାୟ, ଚନ୍ଦ୍ରମୋହନ ବସ୍ତିଆ; ସଂସ୍କୃତ ଓ ଓଡ଼ିଆ ବିଭାଗରେ କାଶୀନାଥ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, କୁଞ୍ଜବିହାରୀ ତ୍ରିପାଠୀ; ଗଣିତ ବିଭାଗରେ ହରେକୃଷ୍ଣ ଦାସ, ବାମାଚରଣ ଦାସ ଓ ରମାକାନ୍ତ ମହାନ୍ତି । ଏହା ପୂର୍ଣ୍ଣାଙ୍ଗ ତାଲିକା ନୁହେଁ, ଯେତିକି ନାମ ମନେପଡ଼ିଲା ।

ଅଧ୍ୟାପକ ନିୟୋଗୀ ଧୋତି-ପଂଜାବି ପିନ୍ଧୁଥିଲେ । ସେ ଅତି ଗମ୍ଭୀର ପ୍ରକୃତିର ଲୋକ ଥିଲେ । ଛାତ୍ରମାନଙ୍କୁ 'Gentlemen' ବୋଲି ସଂବୋଧନ କରୁଥିଲେ । ଥରେ ଦୀପାବଳି ଉତ୍ସବ ସମୟରେ କେହି ତାଙ୍କ ଚଉକିତଳେ ଚଡ଼ଚଡ଼ି ରଖିଦେଇଥିଲା । ସେ ବସିଲା ବେଳକୁ ତାହା ଫୁଟିଲା । ସେ କିଛି କହିଲେ ନାହିଁ, ଆଖିରେ ଲୁହ । ନିଜେ କାନ୍ଦି ସମସ୍ତଙ୍କୁ କନ୍ଦାଇଦେଲେ । ସବୁ ଛାତ୍ର ଛିଡ଼ାହୋଇ କ୍ଷମାପ୍ରାର୍ଥନା କଲେ ।

ଅଧ୍ୟାପକ କୃତ୍ତିବାସ ସାମନ୍ତରାୟଙ୍କ ପ୍ରଥମ ଦିନର ଉପଦେଶ ଆଜିଯାଏ ମନରେ ଗାର ହୋଇ ରହିଛି– ''ମୁଁ ପଢ଼ାଇବାକୁ ଆସିନାହିଁ, ଭଲ ଛାତ୍ର ନିଶ୍ଚୟ ଭଲକରିବେ, କେବଳ ପାସ୍ ନମ୍ବର ରଖିବାକୁ ଚାହୁଁଥିବା ଛାତ୍ରମାନଙ୍କ ପାଇଁ ବହୁ ଶସ୍ତା ନୋଟ-ବହି ମିଳୁଛି । ମୋତେ ଦେଖ, ଭଲ ପଢ଼ିଲେ ମୋ ପରି ହେବ ।''

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି "First year students are my servants" ବୋଲି ଉପହାସରେ କହୁଥିଲେ । ପ୍ରାଚୀନ ଓଡ଼ିଆ-ସାହିତ୍ୟର ପୁନରୁଦ୍ଧାର କ୍ଷେତ୍ରରେ ତାଙ୍କ ଦାନ ଅତୁଳନୀୟ । ସେ ଓଡ଼ିଆ ଶବ୍ଦର ଅର୍ଥକୁ ଇଂରେଜୀ ଭାଷାରେ ତର୍ଜମା କରୁଥିଲେ । 'ମୁହୁସୁଲି' ଶବ୍ଦର ଅର୍ଥକୁ ଦିନେ ବୁଝାଇ କହିଲେ– "I have ransacked all the literature of the world but I have not come across such a word" 'ମୁହୁସୁଲି'– ମୃଦୁହାସିନୀ, ମନ୍ଦହାସିନୀ– Whenever a guest enters the house, she entertains him with a smile on her lips–ମୁହୁସୁଲି ।  କହିଲାବେଳେ ଆଖି ବନ୍ଦ, ଉଚ୍ଚସ୍ୱର ।

କବି ଦାନ୍ତେଙ୍କ ସହିତ କବି ଦୀନକୃଷ୍ଣଙ୍କ ତୁଳନା କିପରି କରାଯାଇପାରେ ବୋଲି ପ୍ରଶ୍ନର ଉତ୍ତରରେ ମନମୋହନ ମିଶ୍ର କହିଲେ ଯେ ଉଭୟଙ୍କ ନାମର ପ୍ରଥମ ଅକ୍ଷର 'ଦ' ଓ ଉଭୟେ ପ୍ରେମକରି ବିତାଡ଼ିତ ହୋଇଥିଲେ । ପିଲା ଭଲ ପଢୁଛି ବୋଲି ଅଧ୍ୟାପକ ଖୁସିହୋଇଯାଇଥିଲେ ।

ପରବର୍ତ୍ତୀ ସମୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ ଓ ଏକାଡେମିକ୍ କାଉନ୍‌ସିଲ୍‌ର ସଭ୍ୟ ଥିଲି । ଅଧ୍ୟାପକ ମହାନ୍ତି ସିନେଟ୍ ସଭ୍ୟ ଥିଲେ । ରାଜ୍ୟର ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ସମ୍ମାନସୂଚକ'ଡକ୍ଟରେଟ୍' ଉପାଧି ପ୍ରଦାନ ନିମନ୍ତେ ସିଣ୍ଡିକେଟର ଏକ ପ୍ରସ୍ତାବ ସିନେଟ୍‌ର ବିଚାର ନିମନ୍ତେ ଆସିଲା । ସିଣ୍ଡିକେଟ୍‌ର ଏଜେଂଡାରେ ନଥାଇ ଓ ସିଣ୍ଡିକେଟର ବୈଠକ ସମାପ୍ତି ପରେ ଏପରି ପ୍ରସ୍ତାବ କିପରି ଗୃହୀତ ହେଲା ବୋଲି ମୁଁ ପ୍ରଶ୍ନ ଉତ୍‌ଥାପନ କରିଥିଲି । ସଭା ସରିଲା ପରେ ମୁଁ ବାରଣ୍ଡାକୁ ଆସି ଦେଖିଲି ଯେ ଅଧ୍ୟାପକ ମହାନ୍ତିଙ୍କ  ସମେତ ଅନ୍ୟ କେତେକ ସଭ୍ୟ ସେଇ ବିଷୟରେ ଆଲୋଚନା କରୁଛନ୍ତି । ମୁଁ ଏପରି ପ୍ରଶ୍ନ ଉଠାଇବା ଅନୁଚିତ ଥିଲା ବୋଲି ଅଧ୍ୟାପକ ମହାନ୍ତି ମୋତେ କହିଲେ । ଗତବର୍ଷ ସେ 'ଡକ୍ଟରେଟ୍' ଉପାଧି ପାଇଲାବେଳେ ମୁଁ ଆପତ୍ତି କରିଥିଲି କି ବୋଲି ତାଙ୍କୁ ପଚାରିଲି । ସେ ହସି ମୋ ପିଠି ଥାପୁଡ଼ାଇଥିଲେ ।

ସେ ଥିଲେ ଚେହେରାରେ ରୁକ୍ଷ, ହୃଦୟରେ କୋମଳ । ତାଙ୍କ ଅବସରଗ୍ରହଣ ପରେ ବହୁଥର ତାଙ୍କ ଘରକୁ ଯାଇଛି । ବହୁ ବିଷୟରେ ଆଲୋଚନା କରିଛି । ସେ ଖୁସୀ ହୋଇଛନ୍ତି, ମୋର ଶୁଭ-କାମନା କରିଛନ୍ତି । ତାଙ୍କ ମୃତ୍ୟୁରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଝଲକର ଅବସାନ ହେଲା ।

ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ସଂଗୀତପ୍ରେମୀ ଥିଲେ । ଉତ୍କଳ ସଂଗୀତ ସମାଜ ପ୍ରତିଷ୍ଠା ତାଙ୍କ ଅବଦାନ ଏବଂ ତାଙ୍କ ସ୍ମୃତି ବହନ କରି ଏଯାଏ ଚାଲିଛି ।

ଦକ୍ଷ ଅଧ୍ୟାପକ ଭାବେ ଗିରିଜା ଶଂକର ରାୟଙ୍କ ସୁଖ୍ୟାତି ଥିଲା । ସେ ଓଡ଼ିଆରେ ବହୁତ ପ୍ରବନ୍ଧ ଲେଖିଛନ୍ତି । ସେ ଅତି ଭୋଜନପ୍ରିୟ ଥିଲେ । କଲେଜରୁ ଫେରିବା

ସଙ୍ଗେ ସଙ୍ଗେ ତାଙ୍କ ଘରପାଖ 'ଦେ' ହୋଟେଲକୁ ଯାଉଥିଲେ । ହୋଟେଲ ପରିଚାଳନା ପାଇଁ ସେ ଯେଉଁ ଅର୍ଥ ଋଣ ଦେଇଥିଲେ, ସୁଧ ହିସାବରେ ଏ ଭୋଜନ ଥିଲା ତାଙ୍କର ପ୍ରାପ୍ୟ । ବହୁ ସଂପତ୍ତି କରିଥିଲେ । 'ଏସବୁ କିଛି ରହିବ ନାହିଁ, ତୁମେ ଦେଖିବ'ବୋଲି ମୋତେ ଥରେ କହିଥିଲେ । ସେ ଚାଲିଗଲେ, ସତକୁସତ ସମ୍ପତ୍ତି କିଛି ରହିଲା ନାହିଁ ।

ଅଧ୍ୟାପକ ବିପିନ ବିହାରୀ ରାୟ ଓଡ଼ିଆରେ ବହୁତ ସୁଚିନ୍ତିତ ପ୍ରବନ୍ଧ ଲେଖୁଥିଲେ । ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ରଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । କାୟସ୍ଥ ହୋଇଥିଲେ ମଧ୍ୟ ତାଙ୍କର ବ୍ରାହ୍ମଣ-ପ୍ରୀତି ପ୍ରବଳ ଥିଲା । ପୁରୀ ଗଲେ ଆମ ଘରେ ଅତିଥି ହେଉଥିଲେ । ପୁରୀ ବ୍ରାହ୍ମଣ-ସମିତିକୁ ଦଶହଜାର ଟଙ୍କା ଦାନକରିଥିଲେ । ବହୁ ଦରିଦ୍ର ମେଧାବୀ ଛାତ୍ରଙ୍କୁ ଉଚ୍ଚଶିକ୍ଷା ନିମନ୍ତେ ସେ ଅର୍ଥ ସାହାଯ୍ୟ କରୁଥିଲେ ।

ଥରେ କଲେଜ ଛାତ୍ର ଧର୍ମଘଟ ସମୟରେ ସେ କ୍ଲାସକୁ ନ ଯିବାରୁ ଅଧ୍ୟକ୍ଷ ତାଙ୍କୁ କୈଫିୟତ ମାଗିଥିଲେ । ସେ ଥିଲେ ଛାତ୍ର-ବତ୍ସଳ ଗୁରୁ । ମୋର ପୁତ୍ରସମ ଛାତ୍ରଗଣ କ୍ଲାସ-ଦ୍ୱାରଦେଶକୁ ଅବରୁଦ୍ଧ କରିଥିବାରୁ କ୍ଲାସକୁ ଯିବାର ପ୍ରଶ୍ନ ଉଠୁନାହିଁ ବୋଲି ସେ ଉତ୍ତର ଦେଇଥିଲେ ।

ମୁଁ ଦର୍ଶନ-ଶାସ୍ତ୍ରର ଛାତ୍ର ଥିଲି । ତାଙ୍କ ଘରକୁ ବହୁଥର ଯାଇଛି । ଆରାମ ଚଉକିରେ ବସିଥିବେ, ଧୀରେ କଥା କହୁଥିବେ, ଖଣ୍ଡେ ବିଡ଼ି ଲଗାଇବାକୁ ଗୋଟିଏ ଦିଆସିଲି ସରୁଥିବ । କିଛି ନ ଖୁଆଇ ଛାଡ଼ିବେ ନାହିଁ ।

୧୯୪୫ ମସିହା ଶେଷଭାଗରେ ବ୍ରହ୍ମପୁର ଜେଲ୍‌ରୁ ଖଲାସ ହୋଇ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲି । ସେତେବେଳକୁ ସେ ଅସୁସ୍ଥ, ଆଖିକୁ ଭଲ ଦିଶୁନଥିଲା । ମୋ ସ୍ୱରରୁ ମୋତେ ଚିହ୍ନିଲେ, ଭାରି ଖୁସୀ ହେଲେ । ପ୍ରାୟ ଦୁଇଘଣ୍ଟାକାଳ ତାଙ୍କ ଜୀବନର ଅନୁଭୂତି କଥା କହିଲେ । ସେ ଥିଲା ତାଙ୍କ ସହିତ ମୋର ଶେଷ ସାକ୍ଷାତ ।

ଅଧ୍ୟାପକ ଘନଶ୍ୟାମ ଦାସଙ୍କର ଉଜ୍ଜ୍ୱଳ ଚେହେରା । ଇଂରେଜୀ ଭାଷାରେ ଦକ୍ଷତା ଥିଲା । ମୁଁ ଇତିହାସ ଛାତ୍ର ଥିଲି । ସେ ମତେ ଖୁବ୍ ସୁଖ ପାଉଥିଲେ । ୧୯୪୦ ମସିହା ବିଶ୍ୱବିଦ୍ୟାଳୟ ପରୀକ୍ଷା ବର୍ଜନ ଆନ୍ଦୋଳନ ବେଳେ ସେ ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଥିଲେ । ଫେବୃଆରୀ ୨୬ ତାରିଖରେ ପରୀକ୍ଷା– ୨୫ ତାରିଖ ସଂଧ୍ୟାରେ ଅନ୍ତେବାସୀଗଣ ଛାତ୍ରାବାସ ଛାଡ଼ି ଚାଲିଯିବା ସମୟରେ କମନ୍-ରୁମ୍ ଟେବୁଲ ଉପରେ ସେ ନିସ୍ତବ୍ଧ ହୋଇ ବସିଥିଲେ । ମୁଁ ତାଙ୍କୁ ବିଦାୟ-ନମସ୍କାର କଲାବେଳେ ମୋତେ ତାଙ୍କ ଛାତିରେ ଜାକି ପିଲାପରି କାନ୍ଦିଲେ । ସେ ଦୃଶ୍ୟ ମୋ ଆଖିଆଗରେ ନାଚିଯାଉଛି ।

ପରବର୍ତ୍ତୀ ସମୟରେ ଆମେ ଦୁହେଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ଥିଲୁ । ଭୁବନେଶ୍ୱରରେ ବୌଦ୍ଧ-କୀର୍ତ୍ତି ଆବିଷ୍କାର କରିବା ଦାୟିତ୍ୱ ସିଣ୍ଡିକେଟ୍ ତାଙ୍କୁ ଅର୍ପଣ କରିଥିଲେ । ଖନନ କାର୍ଯ୍ୟର ଅଗ୍ରଗତି ଦେଖିବାପାଇଁ ଦିନେ ସବୁ ସିଣ୍ଡିକେଟ୍

ସଭ୍ୟ ଭୁବନେଶ୍ୱର ଯାଇଥିଲୁ । ତଳେ ଗୋଟିଏ କୋଚଟ-କଳା ତଂବା ପଡ଼ିଥିଲା । ତାହା ବାରଶହ ଶତାବ୍ଦୀର ମୁଦ୍ରା ବୋଲି ସେ କହିଲାବେଳେ ଦଶମ ଶତାବ୍ଦୀର ବୋଲି ମୁଁ କହିବାରେ 'ଉପଯୁକ୍ତ ଶିକ୍ଷକଙ୍କର ଉପଯୁକ୍ତ ଛାତ୍ର' ବୋଲି କୁଳପତି ପରିଜା ସାହେବ ହସହସ ମୁହଁରେ ମନ୍ତବ୍ୟ ଦେଇଥିଲେ ।

୧୯୫୭ ମସିହାରେ ସେ ଅଧ୍ୟାପକ ପଦରୁ ସ୍ୱଇଚ୍ଛାରେ ଅବସର ଗ୍ରହଣ କରି ସାଧାରଣ ନିର୍ବାଚନରେ ସମ୍ବଲପୁର-ବଲାଙ୍ଗୀର ଲୋକସଭା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ହୋଇଥିଲେ । ଗଣତନ୍ତ୍ର-ପରିଷଦର ପ୍ରାର୍ଥୀ ଶ୍ରଦ୍ଧାକର ସୂପକାରଙ୍କ ଦ୍ୱାରା ସେ ପରାଜିତ ହେଲେ । ସମ୍ବଲପୁର ଅଞ୍ଚଳରୁ ସେ ଅଧିକ ଭୋଟ ପାଇଥିଲେ ।

୧୯୫୮ ମସିହାରେ ମୁଁ ଦ୍ୱିତୀୟଥର ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍‌ସଭ୍ୟ ପଦପାଇଁ ପ୍ରାର୍ଥୀ ହେଲାବେଳେ ତାଙ୍କ ଘରକୁ ଯାଇଥିଲି । ସେତେବେଳକୁ ସେ ରୁଗ୍‌ଣ, ଭଲଭାବେ ଚିହ୍ନୁ ନଥିଲେ ବା କହିପାରୁନଥିଲେ । ମୋ ନାଁ ଶୁଣି ମୋତେ ଆଶୀର୍ବାଦ କରିଥିଲେ । ମୋ ସହିତ ତାଙ୍କର ତାହା ଶେଷଦେଖା । ଜୀବନରେ ଯାହା ପାଇବାର କଥା, ତାହା ପାଇନଥିବା ଦୁଃଖ ତାଙ୍କୁ ବଡ଼ ବାଧିଥିଲା ।

ଅଧ୍ୟାପକ ପର୍ଶୁରାମ ମିଶ୍ର— ଶାନ୍ତ, ଧୀର, ଉଦାର ଓ ସ୍ନେହୀ । ସେ ମୋର ସୁପରିନ୍‌ଟେଣ୍ଡେଣ୍ଟ୍ ଥିଲେ । ପରବର୍ତ୍ତୀ ସମୟରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲାବେଳେ ମୁଁ ସିଣ୍ଡିକେଟ୍-ସଭ୍ୟ ଥିଲି । ସେ କେବେ ରାଗିବାର ମୁଁ ଦେଖିନାହିଁ । ଥରେ ସିଣ୍ଡିକେଟ୍ ସଭାରେ ମୁଁ ନାନା ବିଷୟରେ ପ୍ରଶ୍ନ ଉତ୍‌ଥାପନ କରିବାରେ ସେ ବିବ୍ରତ ହୋଇ ଚଉକିରୁ ଉଠିଗଲେ । କହିଲେ— ବିବୁଧେନ୍ଦ୍ର, ତୁମ ଯୋଗୁ ମୁଁ ଇସ୍ତଫା ଦେଇଦେବି । ମୁଁ ଚୁପ୍ ରହିଲି । ପରେ ସେ ସଂବଲପୁର ବିଶ୍ୱବିଦ୍ୟାଳୟର କୁଳପତି ହେଲାପରେ ମୁଁ ତାଙ୍କୁ ଦୁଇଥର ଦେଖା କରିବାକୁ ଯାଇଥିଲି ।

ଅଧ୍ୟାପକ ବଳଭଦ୍ର ପ୍ରସାଦଙ୍କ କଥା । ସେ ଥିଲେ ସ୍ୱାଧୀନତା ପ୍ରେମୀ, ସବୁବେଳେ ଖଦଡ଼ ପିନ୍ଧୁଥିଲେ । ବହୁ କଂଗ୍ରେସ ନେତାଙ୍କ ସହିତ ତାଙ୍କର ସୁସଂପର୍କ ଥିଲା । ଆମେ ଛାତ୍ରାବାସରେ ଥିଲାବେଳେ ବିପ୍ଳବୀ ଜୟପ୍ରକାଶ ନାରାୟଣ ତାଙ୍କର ଅତିଥି ହୋଇଥିଲେ । ଆମକୁ ସେ ତାଙ୍କ ସହିତ ପରିଚିତ କରାଇ ଦେଇଥିଲେ । ମୋତେ ଖୁବ୍ ସୁଖ ପାଉଥିଲେ, ନିଜ ସାନଭାଇ ପରି ବ୍ୟବହାର କରୁଥିଲେ, ଦୁଃଖରେ ସାନ୍ତ୍ୱନା ଦେଉଥିଲେ, ଅଭାବରେ ସାହାଯ୍ୟ କରୁଥିଲେ, ସ୍ୱାଧୀନତା ସଂଗ୍ରାମରେ ମୋର ଯୋଗଦାନକୁ ଉତ୍ସାହିତ କରୁଥିଲେ । ପରେ, ତାଙ୍କ ସହିତ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ ଏକାଡେମିକ୍ କାଉନ୍‌ସିଲର ସଭ୍ୟରୂପେ ମୁଁ କାର୍ଯ୍ୟ କରିଛି । ବୈଠକ ପୂର୍ବରୁ ବହୁ ସମସ୍ୟା ବିଷୟରେ ସେ ମୋର ମତାମତ ଲୋଡ଼ିଛନ୍ତି । ପରେ ସେ ପାଟଣା ଓ ଆଲ୍ଲାବାଦ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ତୁଲାଇଥିଲେ ।

ମୁଁ କେନ୍ଦ୍ର-ମନ୍ତ୍ରୀ ଥିଲାବେଳେ ଆଲ୍ଲାବାଦ ଯାଇଥିଲି । ଶୁଣିଲି, ନିଜକୁ 'ଓଡ଼ିଆ'ବୋଲି ସବୁଠି ସେ ନିଜର ପରିଚୟ ଦେଇଛନ୍ତି । ମୋତେ ବିଶ୍ୱବିଦ୍ୟାଳୟକୁ ଡାକିଥିଲେ । ମୁଁ ପହଞ୍ଚିଲାବେଳକୁ ଅଫିସ ଦୁଆରମୁହଁରେ ଅନ୍ୟମାନଙ୍କ ସହିତ ସେ ଉପସ୍ଥିତ । ସେ ମୋ ମଟରଗାଡ଼ି ଦୁଆର ଖୋଲିବାରୁ ବ୍ୟସ୍ତହୋଇ– ''ଏ କ'ଣ କରୁଛନ୍ତି ସାର୍'' ବୋଲି ମୁଁ କହିଲି । 'ତୁମେ ଆମର ଅତିଥି' ବୋଲି ହସି ହସି ସେ ଉତ୍ତର ଦେଇଥିଲେ । ସେ ଥିଲେ ବିହାରୀ, କିନ୍ତୁ ଓଡ଼ିଶା ଥିଲା ତାଙ୍କ ଜୀବନର ଦୀର୍ଘ ସମୟର କର୍ମଭୂମି । ଶେଷଜୀବନରେ ଭୁବନେଶ୍ୱରରେ ସେ ଅବସ୍ଥାନ କରୁଥିଲେ । ସାନଭାଇ ମହେନ୍ଦ୍ର ରାଉତଙ୍କଠାରୁ ତାଙ୍କ ମୃତ୍ୟୁସଂବାଦ ପାଇ ବଡ଼ ବ୍ୟଥିତ ହୋଇଥିଲି– ମୋର ଜଣେ ବଡ଼ଭାଇ ଓ ଗୁରୁଜନ ଚାଲିଗଲେ ।

ରେଭେନ୍ସା କଲେଜର ପୁରାତନ ଛାତ୍ର ସଂଘର ବାର୍ଷିକ ଅଧିବେଶନ ହେଉଥିଲା । ଏହା ଥିଲା ପୁରାତନ ଓ ବର୍ତ୍ତମାନର ଛାତ୍ରଙ୍କ ମିଳନପୀଠ । ଏକ୍‌ଜିବିସନ୍, ମୀନାବଜାର ଏହି ତିନିଦିନିଆ ଉତ୍ସବର ଅଂଶବିଶେଷ ଥିଲା । ଅଧ୍ୟାପକ ନିର୍ମଳଚନ୍ଦ୍ର ମୁଖାର୍ଜୀ ଥିଲେ ଏହି ଆସୋସିଏସନର ପ୍ରାଣ । କେମିତି ହେବ, କ'ଣ ହେବ, ଯୋଜନା ବର୍ଷଟାଯାକ କରୁଥିଲେ । ମନେଅଛି, ୧୯୪୦ ମସିହା ଅଧିବେଶନରେ ଭାଷଣ ଦେଇଥିଲେ, କଂଗ୍ରେସ-ନେତ୍ରୀ କୋକିଳକଂଠୀ ଶ୍ରୀମତୀ ସରୋଜିନୀ ନାୟଡୁ । ସେ ଭାଷଣ ଥିଲା କବିତାର-ଉତ୍ସ । ସଂଧ୍ୟାବେଳେ ଏକ ଏକାଂକିକା ନାଟକ ପ୍ରଦର୍ଶିତ ହୋଇଥିଲା । ମୁଁ ସେଥିରେ ଅଭିନୟ କରିଥିଲି । 'ଜୀବନର ରଙ୍ଗମଞ୍ଚରେ ତୁମେ ସଫଳ ହୁଅ'ବୋଲି ଅଧ୍ୟାପକ ଗୁରୁଚରଣ ମହାନ୍ତିଙ୍କ ସେଦିନର ଆଶୀର୍ବାଦ ମୁଁ ଭୁଲିନାହିଁ ।

(୬)

## ଛାତ୍ରଙ୍କ ସାହିତ୍ୟଚର୍ଚ୍ଚା

ସେତେବେଳେ ବାଳକୃଷ୍ଣ କରଙ୍କ ସଂପାଦନାରେ 'ସହକାର'ଓ ନୀଳକଣ୍ଠ ଦାସଙ୍କ ସଂପାଦନାରେ 'ନବଭାରତ' ନାମକ ଦୁଇଟି ମାସିକ ସାହିତ୍ୟ-ପତ୍ରିକା ଲୋକପ୍ରିୟ ଥିଲା । ବହୁ ଛାତ୍ର ସାହିତ୍ୟଚର୍ଚ୍ଚା କରୁଥିଲେ । ସତ୍ୟନାରାୟଣ ନାୟକ ଓ ପ୍ରାଣବନ୍ଧୁ କରଙ୍କ ନାଟକ; ରାଜକିଶୋର ରାୟ, ମନମୋହନ ମିଶ୍ର, କୀର୍ତ୍ତନ ବିହାରୀ ପଟ୍ଟନାୟକ, ସଚ୍ଚି ରାଉତରାୟଙ୍କ କବିତା; ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, ବିଭୂତିଭୂଷଣ ତ୍ରିପାଠୀଙ୍କର କେତେକ ଲେଖା ମଧ୍ୟ ସେଥିରେ ପ୍ରକାଶିତ ହୋଇଥିଲା । ମୋର କେତୋଟି ପ୍ରବନ୍ଧ ଓ ଗଳ୍ପ 'ନବଭାରତ'ରେ ସ୍ଥାନପାଇଥିଲା ।

ଦିନେ କେତେକ ଛାତ୍ରୀ ଘୋଡ଼ାଗାଡ଼ିରେ କଲେଜକୁ ଯାଉଥିବାବେଳେ ମହାନ୍ତିବାବୁ ସାଇକେଲରୁ ଘୋଡ଼ାଗାଡ଼ି ସାମ୍ନାରେ ତଳେ ପଡ଼ିଗଲେ । ଗାଡ଼ି ଭିତରୁ ଭଗିନୀଙ୍କ ହାସ୍ୟରୋଳ ତାଙ୍କୁ ବଡ଼ ବାଧିଲା । ତାଙ୍କର ଚେହେରା ଦେଖି ହସିଥିବା ଭଗିନୀଗଣ ବିଶ୍ୱପ୍ରସିଦ୍ଧ କୋଣାର୍କ ମନ୍ଦିର ନିର୍ମାତା ବିଶୁ ମହାରଣାର ଚେହେରା ଦେଖିଛନ୍ତି କି ବୋଲି ସେ କହିବାରେ, ବିଶୁ ମହାରଣାର ଉଚ୍ଚତା ଆଉ ଦୁଇ ଇଞ୍ଚ ବେଶି ହୋଇଥିଲେ କ'ଣ ହୋଇଥାନ୍ତା ବୋଲି ମନମୋହନ ମିଶ୍ର ତର୍ଜମା କରିଥିଲେ । ଗୋପୀନାଥ ମହାନ୍ତି ଓ ରାଜକିଶୋର ପଟ୍ଟନାୟକଙ୍କ ଗଳ୍ପ 'ଭଲ ପାଇବାର ଶେଷକଥା' ବହୁମାସ ଧରି ପ୍ରକାଶିତ ହୋଇଥିଲା ।

ଉପେନ୍ଦ୍ର ସାମଲଙ୍କର ସାହିତ୍ୟ ଓ ନାଟକରେ ବଡ଼ ସଉକ । ସେ 'ଆରତି' ନାମକ ଏକ ପତ୍ରିକା ପ୍ରକାଶ କଲେ । ସେଥିରେ ସଚ୍ଚି ରାଉତରାୟଙ୍କ କବିତା ପ୍ରକାଶିତ ହୋଇଥିଲା ।

"ତୁମ ଅତୀତରେ ଲାଗିଛି ଇତର ଦନ୍ତର ଦଂଶନ,
ସେଥିରେ ମୋର ଯାଏ ଆସେ ନାହିଁ କିଛି ।
ତୁମେ ମୋର ଏକାନ୍ତ ମୋର ।"

ମନରୁ ଲେଖୁଛି, ଏମିତି କିଛି, ଟିକିଏ ଏପଟ ସେପଟ ହୋଇପାରେ ।

ଗଦ୍ୟକବିତା ବିଷୟରେ ପ୍ରାଣବନ୍ଧୁ କର ଲେଖିଲେ—

"ନଥିବ ଛଂଦ, ନଥିବ ଯତି
ଠିକ୍ ଯେପରି ବିଧବା ସତୀ"

ମନେପଡୁଛି, ୧୯୩୮ ମସିହାରେ କଟକରେ ବାଜି ରାଉତର ଶବ ଶୋଭାଯାତ୍ରା । ସେଦିନ ରାତିରେ ତେଲେଙ୍ଗାବଜାରରେ ତାଙ୍କ ଭଗ୍ନୀପତି ଡାକ୍ତର ଜଗନ୍ନାଥ ଦାସଙ୍କ ଅର୍ଦ୍ଧନିର୍ମିତ କୋଠାଘରେ ମହମବତି ଆଲୁଅ ତଳେ ସଚ୍ଚି ରାଉତରାୟ ଲେଖିଥିଲେ—

ନୁହେଁ ବଂଧୁ, ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ ଏ ଅଲିଭା ମୁକତି-ଶଳିତା ।
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳିପୋଡ଼ି ଦେବାକୁ ଧସାଇ ।

## (୭)

# ବିଧାନସଭା ନିର୍ବାଚନ

୧୯୩୭ ମସିହାରେ, ୧୯୩୫ ମସିହା ଶାସନ ଖସଡ଼ା ଅନୁଯାୟୀ ପ୍ରାଦେଶିକ ବିଧାନସଭା ନିର୍ବାଚନ ପ୍ରଥମେ ଓଡ଼ିଶାରେ ହେଲା । ବ୍ୟବସ୍ଥାସଭାର ୬୦ ଆସନ ମଧ୍ୟରୁ ୩୭ଟି ଆସନରେ ନିର୍ବାଚନ ଲଢ଼ି କଂଗ୍ରେସ ୩୬ଟି ଆସନରେ ଜୟଯୁକ୍ତ ହୋଇଥିଲା । କଂଗ୍ରେସ ସଭାପତି ପଣ୍ଡିତ ଜବାହରଲାଲ ନେହ୍ରୁ କଂଗ୍ରେସ ସପକ୍ଷରେ ବହୁସ୍ଥାନରେ ଭାଷଣ ଦେଇଥିଲେ । ନୀଳକଣ୍ଠ ଦାସ ଓ ଭାଗୀରଥି ମହାପାତ୍ର ଯଥାକ୍ରମେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଓ ସଂପାଦକ ଥିଲେ । ନୀଳକଣ୍ଠ ବାବୁ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ ଥିଲେ । ସେ ଓ ଭାଗୀରଥିବାବୁ ନିର୍ବାଚନରେ ପ୍ରାର୍ଥୀ ନ ହୋଇ ନିର୍ବାଚନ ପରିଚାଳନାର ଦାୟିତ୍ୱ ନେଇଥିଲେ ।

ନିର୍ବାଚନ-ଖର୍ଚ୍ଚ ନିମନ୍ତେ କେନ୍ଦ୍ର ବ୍ୟବସ୍ଥାସଭାର କଂଗ୍ରେସଦଳ ନେତା ଭୁଲାଭାଇ ଦେଶାଇ ନିଜ ହାତପାଣ୍ଠିରୁ ଆଠହଜାର ଟଙ୍କା ନୀଳକଣ୍ଠ ଦାସଙ୍କୁ ଦେଇଥିଲେ । ନିର୍ବାଚନ ସରିଲା—୩୬ଜଣ ପ୍ରାର୍ଥୀ ଜିଣିଲେ, ତଥାପି ଏତେଗୁଡ଼ାଏ ଟଙ୍କା କୁଆଡ଼େ ଗଲା ବୋଲି ତାଙ୍କ ବିରୋଧୀ-ଗୋଷ୍ଠୀ ପ୍ରଶ୍ନ କଲେ । ତା'ର ଉତ୍ତରରେ ଭୁଲାଭାଇ କହିଥିଲେ—ତାହା ତାଙ୍କର ବ୍ୟକ୍ତିଗତ ସାହାଯ୍ୟ, ଅନ୍ୟମାନେ ସେ ବିଷୟରେ ପ୍ରଶ୍ନ କରିପାରିବେ ନାହିଁ ।

କଂଗ୍ରେସରେ ଗୋଷ୍ଠୀବିବାଦ ଓ ପରସ୍ପର ପ୍ରତି ଆକ୍ଷେପ କିଛି ନୂଆ କଥା ନୁହେଁ । ୧୯୨୭ ମସିହା ବଢ଼ି-ପାଣ୍ଠିରୁ ଗୋପବନ୍ଧୁ ଦାସ କଉଡ଼ି ଖାଇଗଲେ ବୋଲି ଭୁବନାନନ୍ଦ ଦାସ ତାଙ୍କ ସମ୍ପାଦିତ 'Young India' ପତ୍ରିକାରେ ଲେଖିଥିଲେ । ଏହା ପଢ଼ି ଗୋପବନ୍ଧୁବାବୁ କାନ୍ଦିଥିଲେ ବୋଲି ନୀଳକଣ୍ଠବାବୁ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

କଟକର ବିଶିଷ୍ଟ ଆଇନଜ୍ଞ ବୀରକିଶୋର ରାୟ ଓ ତାଙ୍କ ସହଧର୍ମିଣୀ ଲତିକା ଦେବୀ ବିରୋଧୀ ଦଳର ପ୍ରାର୍ଥୀ ଥିଲେ । ଲତିକା ଦେବୀ ଓ ଓଡ଼ିଶାର ପ୍ରଥମ ନାରୀ ସତ୍ୟାଗ୍ରହୀ କଂଗ୍ରେସ-ପ୍ରାର୍ଥିନୀ ଶ୍ରୀମତୀ ସରଳା ଦେବୀ କଟକ ଆସନରୁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ବୀରବାବୁ ପରାଜିତ ହେଲେ । ଲତିକାଦେବୀଙ୍କ ଭୋଟ ଗଣତି ଦିନ ଦୁଇଧାଡ଼ି କବିତା କାନ୍ଥବାଡ଼ରେ ଲେଖାହୋଇଥିଲା —

''ଆଜି ରଣେ ପ୍ରାଣନାଥ ହୋଇଲେ ନିହତ
ପ୍ରାଣେଶ୍ୱରୀ ଚାହିଁଛନ୍ତି ପହିଲା ପର୍ଯ୍ୟନ୍ତ ।''

କିଏ ଲେଖିଲା, କିଏ ଲେଖିଲା ବୋଲି ହୁରି ପଡ଼ିଲା ।

କଂଗ୍ରେସ ଦଳର ଦଳପତି କିଏ ହେବ ? କଂଗ୍ରେସର ସାମ୍ୟବାଦୀ ସଭ୍ୟଗଣ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ଦଳପତି ରୂପେ ଚାହୁଁଥିଲେ । ଅନ୍ୟପକ୍ଷରେ ଦଳର ଅନେକ ସଭ୍ୟ ନୀଳକଣ୍ଠ ଦାସଙ୍କୁ ସମର୍ଥନ କରି କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼କୁ ଜଣାଇଲେ । ଏତିକିବେଳେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ଅଧ୍ୟକ୍ଷତାରେ ଗଠିତ 'ରୁଲ୍ କମିଟି' ପ୍ରସ୍ତାବ କଲେ ଯେ କେବଳ ନିର୍ବାଚିତ ସଭ୍ୟଙ୍କ ଭିତରୁ ଦଳପତି ନିର୍ବାଚିତ ହେବେ । ନୀଳକଣ୍ଠ ଦାସ ଓ ବିଶ୍ୱନାଥ ଦାସଙ୍କ ଭିତରେ କଥା ହେଲା ଯେ, ନୀଳକଣ୍ଠ ଗୋଷ୍ଠୀ ବିଶ୍ୱନାଥବାବୁଙ୍କୁ ସମର୍ଥନ କରିବେ ଓ ସେ ମୁଖ୍ୟମନ୍ତ୍ରୀ ହେଲାପରେ 'ରୁଲ' ବଦଳାଇ ଦେବେ । ନୀଳକଣ୍ଠ-ଗୋଷ୍ଠୀର ସମର୍ଥନରେ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେଲାପରେ ତାଙ୍କ ପ୍ରତିଶ୍ରୁତି ଭୁଲିଗଲେ ବୋଲି ନୀଳକଣ୍ଠ ଦାସ ତାଙ୍କ ଜୀବନୀରେ ଲେଖିଛନ୍ତି ।

୧୯୩୫ ମସିହା ଶାସନ ଖସଡ଼ା ଅନୁଯାୟୀ 'ସକଳ କ୍ଷମତା' ଲାଟ୍‌ସାହେବଙ୍କ ହାତରେ ଥିଲା । ଏହି ପରିସ୍ଥିତିରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବ କି ନାହିଁ ପ୍ରଶ୍ନ ଉଠିଲା । ଲାଟ୍‌ସାହେବ ତାଙ୍କ 'ସ୍ୱତନ୍ତ୍ର କ୍ଷମତା' ପ୍ରୟୋଗ ନ କରି ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ଅନୁଯାୟୀ କାର୍ଯ୍ୟ କରିବେ ବୋଲି ସରକାରୀ ପ୍ରତିଶ୍ରୁତି ନ ମିଳିବା ପର୍ଯ୍ୟନ୍ତ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବ ନାହିଁ ବୋଲି ନିଷ୍ପତ୍ତି ହେଲା ।

ଏ ସମସ୍ୟାର ସମାଧାନ ହେବାଯାଏ ଗୋଟିଏ ଅସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠିତ ହେଲା । ପାରଳା-ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଧାନମନ୍ତ୍ରୀ ଏବଂ ବ୍ରହ୍ମପୁରର ଓକିଲ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ପୁରୀର ଓକିଲ ଲତିଫୁର ରହମନ୍ ମନ୍ତ୍ରୀ ହେଲେ । ଏହି ମନ୍ତ୍ରିମଣ୍ଡଳ ଅଳ୍ପକାଳ କାର୍ଯ୍ୟ କରିଥିଲା । ଶେଷକୁ ସରକାର କଂଗ୍ରେସ ସର୍ତ୍ତରେ ରାଜିହେଲେ । ବିଶ୍ୱନାଥ ଦାସଙ୍କ ପ୍ରଧାନମନ୍ତ୍ରିତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହେଲା । କଟକର ନିତ୍ୟାନନ୍ଦ କାନୁନ୍‌ଗୋ ଓ ସଂବଲପୁରର ବୋଧରାମ ଦୁବେ ମନ୍ତ୍ରୀ ହେଲେ । ପୁରୀର ଜଗନ୍ନାଥ ମିଶ୍ର, କେନ୍ଦ୍ରାପଡ଼ାର ଯଦୁମଣି ମଙ୍ଗରାଜ ଏବଂ କିଶନନଗରର ରାଜକୃଷ୍ଣ ବୋଷ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ହେଲେ ।

(୮)

## ଛାତ୍ରସଂଘର ଶାଖାଗଠନ

୧୯୩୭ ମସିହାରେ ନିଖିଳ ଭାରତ ଛାତ୍ର ଫେଡ଼େରେସନ୍ ଓ ତା'ର ଓଡ଼ିଶା ଶାଖା ଗଠିତ ହେଲା । କଂଗ୍ରେସ ପରି ଏହା ଥିଲା ସବୁ ମତବାଦର ସ୍ୱାଧୀନତାପ୍ରେମୀ ଛାତ୍ରଙ୍କର ମଂଚ । ଛାତ୍ରସମାଜକୁ ସଂଘବଦ୍ଧ କରି ସ୍ୱାଧୀନତା-ସଂଗ୍ରାମରେ ସାମିଲ

କରିବା ଏହାର ଲକ୍ଷ୍ୟ ଥିଲା । ରାମକୃଷ୍ଣ ପତି, ବିଜୟ ଚନ୍ଦ୍ର ଦାସ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ଅଶୋକ ଦାସ, ଗଙ୍ଗାଧର ମହାପାତ୍ର, ମନମୋହନ ମିଶ୍ର, ସଚ୍ଚି ରାଉତରାୟ, ନୀଳମଣି ରାଉତରାୟ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଦୁର୍ଗାଚରଣ ମହାନ୍ତି, ବଳରାମ ମହାନ୍ତି, ବନମାଳୀ ପଟ୍ଟନାୟକ, ସୁରଜ୍‌ମଲ୍ଲ ସାହା, ନରସିଂହ ସାମନ୍ତସିଂହାର, ମୋତିଲାଲ ତ୍ରିପାଠୀ, ଉଦୟନାଥ ମିଶ୍ର, ଜୟକୃଷ୍ଣ ମହାନ୍ତି, ବାଙ୍କବିହାରୀ ଦାସ, ସୁଧୀର କବି, ପଦ୍ମନାଭ ତ୍ରିପାଠୀ, ଗଂଗାଧର ରଥ, ନରସିଂହ ତ୍ରିପାଠୀ, ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ, ଗୋବିନ୍ଦ ତ୍ରିପାଠୀ, ଫକୀର ଚରଣ ଦାସ, ରାମହରି ରଥ, ବିକ୍ରମ ଦାସ, ନଟଗୋପାଳ ଦାସ, ସୁବୋଧ ଚନ୍ଦ୍ର ବେଉରିଆ, ସତ୍ୟବାଦୀ ମିଶ୍ର, ଅମିତାଭ ପାତ୍ର ପ୍ରଭୃତି ରେଭେନ୍ସା କଲେଜ, ମେଡ଼ିକାଲ ସ୍କୁଲ ଓ ବିଭିନ୍ନ ସ୍କୁଲର ଛାତ୍ରଗଣ ସଂଘ-ପତାକା ତଳେ ଏକଜୁଟ୍ ହୋଇଥିଲେ । ପ୍ରତିଷ୍ଠାତା-ସଭ୍ୟଙ୍କ ଭିତରୁ ମୁଁ ଜଣେ ।

ଅଶୋକ ଭାଇନା, ଗଂଗୁ ଭାଇନା, ମନମୋହନ, ସୁରଜ୍ ଓ ମୁଁ ସଭ୍ୟ ସଂଗ୍ରହ ପାଇଁ କେତେ ସ୍କୁଲକୁ ଯାଇଛୁ । ରେଳ-ଟିକଟ୍ ପାଇଁ ପଇସା ନଥିଲା, ସେଥିପାଇଁ ବିନା ଟିକଟ୍‌ରେ ପ୍ରଥମଶ୍ରେଣୀ ଡବାରେ ଯାଉଥିଲୁ । ଟି.ଟି.ଆଇ. ଆସିଲେ କେମିତି ଅଛନ୍ତି ବୋଲି ପଚାରି ଆମେ ନମସ୍କାର କରୁ । ସେ ଖୁସିହୋଇ ଚାଲିଯାଆନ୍ତି । ଥରେ ଜଣେ ଟି.ଟି.ଆଇ. ମନମୋହନଙ୍କୁ ଟିକଟ ମାଗିଲେ । କେତେଥର ଟିକଟ ଦେଖିବ ବୋଲି ମନମୋହନଙ୍କ ପ୍ରଶ୍ନରେ ସେ ଦୁଃଖପ୍ରକାଶ କରି ଚାଲିଯାଇଥିଲେ । ରେଳରେ ଯା'ଆସ କରିବାରେ କିଛି ଅସୁବିଧା ନଥିଲା ।

ଖୋର୍ଦ୍ଧାସ୍କୁଲ କଥା ମନେଅଛି । ଆମ ସଭାରେ ଯୋଗ ନ ଦେବାକୁ ହେଡ୍‌ମାଷ୍ଟର ରାୟସାହେବ ବାଙ୍କବିହାରୀ ପଟ୍ଟନାୟକ ଛାତ୍ରମାନଙ୍କୁ ତାଗିଦ୍ କରିଥିଲେ । ଆଦେଶ ଅବଜ୍ଞା କଲେ କଠୋର ଦଣ୍ଡ-ବ୍ୟବସ୍ଥା କରାଯିବ ବୋଲି ଧମକ ଦେଇଥିଲେ । ତା ସତ୍ତ୍ୱେ କେତେକ ଛାତ୍ର ସଭାର ବ୍ୟବସ୍ଥା କରି ଆମକୁ ସ୍ୱାଗତ କରିଥିଲେ । ସେମାନଙ୍କ ଭିତରୁ ରାମଚନ୍ଦ୍ର ମିଶ୍ର ଓ ରାମଚନ୍ଦ୍ର ରାମଙ୍କ କଥା ମନେପଡୁଛି । ଫଳରେ ରାମଚନ୍ଦ୍ର ମିଶ୍ର ସ୍କୁଲରୁ ବିତାଡ଼ିତ ହୋଇଥିଲେ ।

ଛାତ୍ରସଂଘ ନେତୃତ୍ୱରେ କେତୋଟି ଛାତ୍ର ଆନ୍ଦୋଳନ ହୋଇଥିଲା । ୧୯୪୨ ମସିହା ଅଗଷ୍ଟ ବିପ୍ଲବ ବେଳକୁ ଓଡ଼ିଶା ଛାତ୍ରସଂଘ ଏକ ସଂଗଠିତ ସେନାବାହିନୀ ରୂପେ ପରିଣତ ହୋଇଥିଲା । ବହୁ ଛାତ୍ର ସେହି ବିପ୍ଳବରେ ଯୋଗଦେଇ କାରାବରଣ କରିଥିଲେ । ୧୯୪୨ ମସିହା ଆନ୍ଦୋଳନରେ ଛାତ୍ରସମାଜର ଭୂମିକା ଓ ତ୍ୟାଗକୁ ପଣ୍ଡିତ ନେହରୁ ପ୍ରଶଂସା କରିଛନ୍ତି ।

## (୯)

# ବିଧାନସଭା ଅଧିବେଶନ

ରେଭେନ୍ସା କଲେଜ ହଲ୍‌ରେ ବିଧାନସଭା ଅଧିବେଶନ ବସୁଥିଲା । ବାଚସ୍ପତି, ମୁକୁଂଦ ପ୍ରସାଦ ଦାସ । ମନ୍ତ୍ରୀ ଓ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀଙ୍କ ଛଡ଼ା ଗୋଦାବରୀଶ ମିଶ୍ର, ଜଗନ୍ନାଥ ଦାସ ଓ ତାଙ୍କ ସାନଭାଇ ଦ୍ୱାରିକାନାଥ ଦାସ, ବିଚିତ୍ରାନନ୍ଦ ଦାସ, ଜଗବନ୍ଧୁ ସିଂହ, ଚାରୁଚନ୍ଦ୍ର ରାୟ ମହାଶୟ, କରୁଣାକର ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ସରଳାଦେବୀ, ଦିବାକର ପଟ୍ଟନାୟକ, ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ, ରାଧାମୋହନ ସାହୁ, ଗୋବିନ୍ଦ ପ୍ରଧାନ, ଲକ୍ଷ୍ମୀନାରାୟଣ ମିଶ୍ର, ପ୍ରହ୍ଲାଦ ରାୟ ଲାଠ ଓ ପ୍ୟାରିଶଙ୍କର ରାୟ ପ୍ରଭୃତି କଂଗ୍ରେସ ଦଳର ସଭ୍ୟ ଥିଲେ । ଏମାନଙ୍କ ମଧ୍ୟରୁ ଅଧିକାଂଶ ସ୍ୱାଧୀନତା ସଂଗ୍ରାମୀ ଓ ସୁବକ୍ତା ଥିଲେ । ବିରୋଧୀ ଦଳରେ ଥିଲେ ପାରଳା, ଖଲ୍ଲିକୋଟ, ପାରିକୁଦ ଓ କନିକାର ରାଜା, ବିଷମକଟକର ଥାଟ୍ ରାଜା, ବ୍ରଜସୁନ୍ଦର ଦାସ, ରାୟବାହାଦୁର ଲୋକନାଥ ମିଶ୍ର, ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ଲତିଫୁର ରହମନ, ଶୋଭନ୍ ଖାଁ, କାଶୀ ବିଶ୍ୱନାଥ ରାଜୁ ଓ ପ୍ରେମାନନ୍ଦ ମହାନ୍ତି ପ୍ରମୁଖ ।

ମୁଖ୍ୟତଃ ଛାତ୍ରଗଣ ହିଁ ଦର୍ଶକ । କାଶୀ ବିଶ୍ୱନାଥ ରାଜୁଙ୍କ କଥା ମନେଅଛି । ସେ ବଣିକ-ସଂଘର ପ୍ରତିନିଧି ଥିଲେ । ଆଇନ୍-ଛାତ୍ର ସୂର୍ଯ୍ୟନାରାୟଣ ଆଚାର୍ଯ୍ୟଙ୍କୁ ତାଙ୍କର ସେକ୍ରେଟାରୀ ରୂପେ ନିଯୁକ୍ତ କରିଥିଲେ । ତାଙ୍କ ଭାଷଣ ଲେଖନ୍ତି ସୂର୍ଯ୍ୟନାରାୟଣ ବାବୁ, ବିଧାନସଭାରେ ଗଡ଼ଗଡ଼ କରି ପଢ଼ିଦିଅନ୍ତି ରାଜୁବାବୁ । ଖୁସିରେ ବାରଣ୍ଡାକୁ ଆସିଲା ବେଳକୁ ଆମେ ତାଙ୍କୁ ଘେରିଯାଇ ତାଙ୍କ ଭାଷଣର ଉଚ୍ଚପ୍ରଶଂସା କରୁ । ସେ ଆମକୁ 'କ୍ୟାଣ୍ଟିନ୍'କୁ ଡାକନ୍ତି, ଅରାଜି ହେଲେ ହାତଧରି ଟାଣି ନେଇଯାଆନ୍ତି, ଇଚ୍ଛା ନଥିଲେ ମଧ୍ୟ ତାଙ୍କ ମନରେ କଷ୍ଟ ନଦେବାପାଇଁ ଯାହା ଇଚ୍ଛା ହୁଏ ଖାଉ ।

ଦିବାକର ପଟ୍ଟନାୟକ ରାଜୁବାବୁଙ୍କୁ ପ୍ରଶଂସା କରୁଥିଲେ । ରାଜୁବାବୁ ଗୋଟିଏ ସ୍କୁଲକୁ ଦଶହଜାର ଟଙ୍କା ଦାନ କରିଥିଲେ । ସ୍କୁଲର ଉଦ୍‌ଘାଟନ ଉତ୍ସବରେ ମୁଖ୍ୟଅତିଥି ହୋଇ ପାଠ ପଢ଼ିବାର ଉପକାରିତା ବିଷୟରେ ବୁଝାଇଲେ—"ପାଠ ପଢ଼ିଲେ ଭଲନୋଟ୍, ଜାଲ୍‌ନୋଟ୍ ଚିହ୍ନିପାରିବ ।" ଏହି ଧାଡ଼ିକିଆ ସାରଗର୍ଭକ ଭାଷଣ ଦିବାକରବାବୁ କେବେ ଭୁଲି ନଥିଲେ ।

ବିଧାନସଭାର କେତେକ ସଭ୍ୟ କଲେଜ-ଡିବେଟିଂ ସୋସାଇଟିର କାର୍ଯ୍ୟକ୍ରମରେ ଭାଗନେଉଥିଲେ । ସେମାନଙ୍କ ସହିତ ଆମର ବ୍ୟକ୍ତିଗତ ସଂପର୍କ ସ୍ଥାପିତ ହୋଇଥିଲା ।

## (୧୦)

# ଡେଲାଙ୍ଗରେ ଗାନ୍ଧୀ ସେବାସଂଘ ଗଠନ

୧୯୩୭ ମସିହାରେ କଲିକତାରୁ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ ନାମକ ଏକ ଇଂରେଜୀ ଦୈନିକ ପତ୍ରିକା ପ୍ରକାଶ ପାଇଲା । ଏହି ସମ୍ବାଦପତ୍ର ସୁଭାଷ ଚନ୍ଦ୍ର ବୋଷଙ୍କ ନୀତି ଓ କାର୍ଯ୍ୟପନ୍ଥାକୁ ସମର୍ଥନ କରୁଥିଲା । ମୁଁ ଏହାର କଟକ-ପ୍ରତିନିଧି ରୂପେ ନିଯୁକ୍ତ ହେଲି । କୌଣସି ପାରିଶ୍ରମିକ ନ ଥିଲା, ଟେଲିପ୍ରିଂଟର-ଯୁଗ ଆସି ନଥିଲା । ଡାକ ଯୋଗେ ବା ଅତି ଜରୁରୀ ହେଲେ ଟେଲିଗ୍ରାମ ଯୋଗେ ଖବର ପଠାଯାଉଥିଲା । ଆଇ.ଏ. ଶ୍ରେଣୀର ଛାତ୍ର ପାଇଁ ଏହା ଏକ ନୂତନ ଅନୁଭୂତି ନୁହେଁ, ପରୀକ୍ଷା ମଧ୍ୟ । ମୁଁ ସେଥିପାଇଁ ପ୍ରସ୍ତୁତ ହୋଇଗଲି ।

୧୯୩୮ ମସିହାରେ ଡେଲାଙ୍ଗରେ ଗାନ୍ଧୀ ସେବାସଂଘର ବୈଠକ ବସିଲା । ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ରମାଦେବୀ ବୈଠକର ପ୍ରଧାନ ଉଦ୍ୟୋକ୍ତା ଥିଲେ । ସେତେବେଳେ ସୁଭାଷଚନ୍ଦ୍ର ବୋଷ କଂଗ୍ରେସ ସଭାପତି । ଗାନ୍ଧିଜୀ, ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ, ପଣ୍ଡିତ ନେହୁରୁ ପ୍ରଭୃତି କଂଗ୍ରେସ ନେତୃବୃନ୍ଦ ମଧ୍ୟ ଆସିଥିଲେ । ଏହିଠାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ବିରୋଧୀଙ୍କ ଅଭିଯୋଗର ଶୁଣାଣି କଂଗ୍ରେସ ପାର୍ଲିଆମେଣ୍ଟାରୀ ବୋର୍ଡ଼ କରିଥିଲେ ।

ମୋର ଆଇ.ଏ. ପରୀକ୍ଷା ସରିଥିଲା । 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼' ପତ୍ରିକାର ପ୍ରତିନିଧି ଭାବେ ମୁଁ ଡେଲାଙ୍ଗ ଯାଇ ବିଧାନସଭା ସଦସ୍ୟ ପ୍ୟାରୀଶଙ୍କର ରାୟଙ୍କ କୁଡ଼ିଆରେ ରହିଲି । ସେତେବେଳକୁ ମୋହିତ୍ ମୈତ୍ର ଦୈନିକ 'ଅମୃତବଜାର ପତ୍ରିକା'ର କଟକ-ପ୍ରତିନିଧି ଥାଆନ୍ତି । ସେ ଅସୁସ୍ଥ ଥିବାରୁ ତାଙ୍କ ତରଫରୁ ବୈଠକର ବିବରଣୀ ତାଙ୍କ ପତ୍ରିକାକୁ ପଠାଇବାକୁ ସେ ମୋତେ ଅନୁରୋଧ କରିଥିଲେ । ପରବର୍ତ୍ତୀ ସମୟରେ ମୋହିତବାବୁ ଶରତଚନ୍ଦ୍ର ବୋଷଙ୍କ ଦ୍ୱାରା ପ୍ରକାଶିତ ଦୈନିକ 'ଦି ନେସନ୍' ଇଂରେଜୀ ପତ୍ରିକାର ସଂପାଦକ ଓ ଲୋକସଭା ସଭ୍ୟ ହୋଇଥିଲେ । ବୈଠକର ବିବରଣୀ ଓ ସାକ୍ଷାତକାର ପ୍ରଭୃତି ସମ୍ବାଦ ମୁଁ ଦୁଇଟିଯାକ ପତ୍ରିକାକୁ ପଠାଇଲି ।

ସେ ସମୟର ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା । ହରିଜନମାନଙ୍କୁ ମନ୍ଦିର ପ୍ରବେଶ ଅଧିକାର ନ ମିଳିବା ପର୍ଯ୍ୟନ୍ତ ସେ ମନ୍ଦିରକୁ ଯିବେ ନାହିଁ ବୋଲି ଗାନ୍ଧିଜୀଙ୍କ ଘୋଷଣା ସତ୍ତ୍ୱେ କସ୍ତୁରିବା ଗାନ୍ଧୀ ଜଗନ୍ନାଥ ଦର୍ଶନରେ ଯିବାରୁ ଗାନ୍ଧିଜୀ ଅନଶନ କରିଥିଲେ । କସ୍ତୁରିବା ମଧ୍ୟ ଅନଶନ କଲେ । 'ଅନଶନ' 'ଅନଶନ'କୁ କାଟିଲା । କସ୍ତୁରିବାଙ୍କୁ କ୍ଷମା-ପ୍ରାର୍ଥନାରେ ଅଧ୍ୟାୟର ସମାପ୍ତି ଘଟିଲା ।

ସେଠାରେ ଗୋଦାବରୀଶ ମିଶ୍ରଙ୍କୁ ସାକ୍ଷାତ କରିବାକୁ ଯାଇଥିଲି । ସେ ମୋତେ ଖ୍ୟାତନାମା କବି ଓ ଗାଳ୍ପିକ ଗୋଦାବରୀଶ ମହାପାତ୍ରଙ୍କ ସହିତ ପରିଚିତ କରାଇଦେଲେ । ମହାପାତ୍ରବାବୁ 'ନିଆଁଖୁଣ୍ଟା' ନାମକ ଏକ ସାପ୍ତାହିକ-ପତ୍ରିକା ପ୍ରକାଶନ ଆରମ୍ଭ କରିଥିଲେ । ସେ ମୋତେ ଦେଲେ 'ନିଆଁଖୁଣ୍ଟା'ର ଦ୍ୱିତୀୟ ସଂଖ୍ୟା । ସେଥିରେ ମୋ ବିଷୟରେ ସେ ଗୋଟିଏ ମନଗଢ଼ା ଲେଖା ଲେଖିଥିଲେ । ସେଥିରେ କୌଣସି ସତ୍ୟତା ନାହିଁ ବୋଲି ମୁଁ ତାଙ୍କୁ କହିବାରେ ସେ ଜାଣନ୍ତି ବୋଲି ହସି କହିଲେ । ଲେଖାର ଉଦ୍ଦେଶ୍ୟ ଭିନ୍ନ ଥିଲା ବୋଲି ତାଙ୍କଠାରୁ ଜାଣିଲି ।

ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା' ବହୁବର୍ଷ ଧରି ସବୁଠୁ ବେଶୀ ଆଦୃତ ପତ୍ରିକା ଥିଲା । କେବଳ ଗୋଦାବରୀଶ ମିଶ୍ରଙ୍କୁ ବାଦ୍‌ଦେଲେ, ଓଡ଼ିଶା ରାଜନୀତିରେ କେହି ନଥିଲେ, ଯେ କି 'ନିଆଁଖୁଣ୍ଟା'ର ଶରବ୍ୟ ହୋଇନାହାନ୍ତି । ତାଙ୍କ ଗୁରୁ ନୀଳକଣ୍ଠ ଦାସ ମଧ ବାଦ୍ ପଡ଼ିନାହାନ୍ତି । ବନମାଳୀଙ୍କୁ ଲକ୍ଷ୍ୟକରି ସେ ଏକ ବ୍ୟଙ୍ଗ-କବିତା ଲେଖିଥିଲେ—

"'ବନା', 'ବନା' ବୋଲି ଡାକୁଥିଲେ
'ବନୁ' ହୋଇଗଲୁ କେତେବେଳେ
'ବନମାଳୀ' ବୋଲି ଡାକିବାକୁ ହେଲା
ବିହି ଲେଖିଥିଲା ଏହା ଭାଲେ ।"

ଫଳରେ ବନମାଳୀଙ୍କ କ୍ରୋଧର ଶିକାର ହେଲାପରେ ଲେଖିଲେ—'ଚାଲରେ କଲମ ଚାଲ' ।

ତାଙ୍କର ଏକ ଯଶସ୍ୱୀ କଲମ । ରେଳଗାଡ଼ି ବା ବସ୍‌ରେ ଯାତାୟାତ କଲାବେଳେ ସେ ଲେଖୁଥିଲେ । ତାଙ୍କ ଗଳ୍ପ 'ପଟ୍ଟନାୟକେ, ପଇସାଟିଏ ଦିଅ' ବହୁଭାଷାରେ ଅନୁବାଦିତ ହୋଇଛି ।

କାଳକ୍ରମେ ମୋ ସହିତ ସେ ଖୁବ୍ ମିଶିଗଲେ । ମୁଁ ଚଉଧୁରୀବଜାରରେ ରହି ଓକିଲାତି କରିବାବେଳେ ପ୍ରାୟ ପ୍ରତ୍ୟେକ ସକାଳେ ସ୍ୱାଧୀନତା ସଂଗ୍ରାମୀ ଓ ସାମ୍ବାଦିକ ଅଦ୍ୱୈତ ବଲ୍ଲଭ ରାୟଙ୍କ ସହିତ ଆସୁଥିଲେ— ଚାହା ଓ ସିଗାରେଟ୍ ମଧରେ ଅନ୍ୟୂନ ଘଣ୍ଟାଏ କଥାବାର୍ତ୍ତା । 'ସିଗାରେଟ୍ ଛାଡ଼ିବି କାହିଁକି' ଶିରୋନାମାରେ କଟକ ରେଡ଼ିଓ ଷ୍ଟେସନରୁ ପ୍ରସାରିତ ମୋ ଭାଷଣ ତାଙ୍କୁ ଖୁବ୍ ଭଲ ଲାଗିଲା ଏବଂ ସେ ତାହା 'ନିଆଁଖୁଣ୍ଟା'ରେ ପ୍ରକାଶ କରିଥିଲେ । ସେ ଥରେ ଲେଖିଥିଲେ 'ଜୀବନଟା ହେଲା ସଖୀ କେନ୍ଦ୍ରାପଡ଼ା ରୋଡ୍' । ସେ ଥିଲା ତାଙ୍କ ଜୀବନର କାହାଣୀ ।

୧୯୪୫ ମସିହା ଶେଷଭାଗରେ ବ୍ରହ୍ମପୁର ଜେଲ୍‌ରୁ ଖଲାସ ହୋଇ ଫରୱାର୍ଡ଼ ବ୍ଲକର କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେବାକୁ ମୁଁ କଲିକତା ଯାଇଥିଲି ।

ସେତିକିବେଳେ ଶରତଚନ୍ଦ୍ର ବୋଷଙ୍କ ବାସଭବନରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେବା ପାଇଁ କଂଗ୍ରେସ ନେତୃବୃନ୍ଦ ଆସିଥାନ୍ତି । 'ଅମୃତବଜାର ପତ୍ରିକା' ଓ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ୍' ଅଫିସ୍‌କୁ ଯାଇ କର୍ମକର୍ତ୍ତା ଓ ସଂପାଦକଗଣଙ୍କ ସହିତ ସାକ୍ଷାତ କରିଥିଲି । ସେମାନେ ତାଙ୍କ ପତ୍ରିକାର ସହ-ସଂପାଦକ ରୂପେ ଯୋଗଦେବାକୁ ମୋତେ ଅନୁରୋଧ କରିଥିଲେ । ଓଡ଼ିଶା ମୋର କର୍ମସ୍ଥଳୀ, ସେଥିପାଇଁ ମୁଁ ରାଜି ହେଲିନାହିଁ । କଟକରେ ଅନୁଷ୍ଠିତ ହୋଇଥିବା 'ଷ୍ଟାଣ୍ଡାର୍ଡ୍'ର ରୌପ୍ୟଜୁବୁଲି ଉତ୍ସବରେ ମୁଖ୍ୟଅତିଥି ଭାବେ ଯୋଗ ଦେଇଥିଲି । ସେମାନେ ମୋତେ ମନେରଖି ଡାକିଛନ୍ତି—ଭାରି ଖୁସୀ ଲାଗିଲା ।

## (୧୧)

## ନାଟକରେ ଅଭିନୟ

'ନାଟକ' ଜଗତରେ ସମଗ୍ର ଦେଶରେ ଓଡ଼ିଶାର ସୁଖ୍ୟାତି ଥିଲା ଅନ୍ନପୂର୍ଣ୍ଣା ଥିଏଟର । ଅଶ୍ୱିନୀକୁମାର ଘୋଷଙ୍କ 'ଆର୍ଟ' ଥିଏଟର ଓ କାଳୀଚରଣ ପଟ୍ଟନାୟକଙ୍କ ପେସାଦାର ସଂସ୍ଥା ଛଡ଼ା ବିଭିନ୍ନ ସ୍ଥାନରେ ବହୁ ସୌଖୀନ କଳାକାରଙ୍କ ଦ୍ୱାରା ମହାରାଷ୍ଟ୍ର ପରି ପ୍ରାୟ ପ୍ରତ୍ୟେକ ଦିନ ନାଟକ ମଞ୍ଚସ୍ଥ ହେଉଥିଲା । କଲିକତାରେ ମଧ୍ୟ ଏତେ ନାଟକ ମଞ୍ଚସ୍ଥ ହେଉନଥିଲା । ପୁରୀ ଜଗନ୍ନାଥ କ୍ଲବରେ ଅଭିନୀତ ନାଟକଗୁଡ଼ିକରେ ମୋର ଓ ବିବେକା ଭାଇନାଙ୍କ ବିଭିନ୍ନ ଭୂମିକାରେ ଅଭିନୟ, ମୋ ନାଟକ-ଶିଖାର ପ୍ରଥମ ସୋପାନ ଥିଲା । ପୁରୀ, ଖୋର୍ଦ୍ଧା, ଗଞ୍ଜାମ ଓ ରେଭେନ୍ସା କଲେଜରେ ଅଭିନୀତ ବହୁ ନାଟକରେ ଆମେ ଦୁଇଭାଇ ଭାଗ ନେଇଛୁ । ସେଥିରେ ମନ ଲାଗିଯାଇଥିଲା ।

ଅନାଥବନ୍ଧୁ ରାୟ(ନନ୍ଦବାବୁ), ବଲାଇ ବାନାର୍ଜୀ, ଅକ୍ଷୟ ଦାସ, ରାମଚନ୍ଦ୍ର ମାନିଆ, ଦୁର୍ଲ୍ଲଭ ସିଂହ, କାର୍ତ୍ତିକ କୁମାର ଘୋଷ, କୃଷ୍ଣଚନ୍ଦ୍ର ପଢ଼ିଆରୀ, ଅଦ୍ୱୈତ ବଲ୍ଲଭ ମହାନ୍ତି ପ୍ରଭୃତି ଅଭିନେତା ହିସାବରେ ଖ୍ୟାତି ଅର୍ଜନ କରିଥିଲେ । ମଞ୍ଚସ୍ଥ ନାଟକ ମଧ୍ୟରୁ ଅଧିକାଂଶ ବଙ୍ଗଳାରୁ ଅନୁବାଦିତ—ଅମିତ୍ରାକ୍ଷର ଛନ୍ଦରେ ଲେଖା, ପଞ୍ଚଅଙ୍କ ବିଶିଷ୍ଟ । କାଳକ୍ରମେ ପେସାଦାର ନାଟକ ସଂସ୍ଥା ବା ସୌଖୀନ କଳାକାର ସଂସ୍ଥା ବା ରଂଗମଞ୍ଚ କିଛି ରହିଲା ନାହିଁ ।

୧୯୩୭-୩୮ ମସିହାରେ ବମ୍ବେର 'ଓ୍ୱାଡ଼ିଆ ମୁଭିଟୋନ୍' ଓ 'ବଂବେ ଟକିଜ୍'ର 'ଅଭିନେତା ଆବଶ୍ୟକ' ବୋଲି ବିଜ୍ଞାପନ ବାହାରିଥିଲା । 'ବମ୍ବେ ଟକିଜ୍'ର ପ୍ରତିଷ୍ଠାତା ହିମାଂଶୁ ରାୟ କଟକର ଲୋକ ଏବଂ ବହୁ ଓଡ଼ିଆ ନାଟକରେ ଅଭିନୟ କରିଥିଲେ ବୋଲି ବିଶିଷ୍ଟ ଅଭିନେତା ବିମଳ ଘୋଷଙ୍କଠାରୁ ଶୁଣିଥିଲି । ଭାଇନା 'ଓ୍ୱାଡ଼ିଆ

ମୁଭିଟୋନ୍'କୁ ଓ ମୁଁ 'ବମ୍ବେ ଟକିଜ୍' କୁ ଫଟୋ ସହ ଦରଖାସ୍ତ ପଠାଇଦେଲୁ । ଡାକରା ଆସିଥିଲା, ମାସିକ ପଚିଶ ଟଙ୍କା ବେତନରେ ୬ମାସ ଟ୍ରେନିଂ ପାଇଁ । ସେତିକିବେଳେ ଆରମ୍ଭ ହେଲା ଛାତ୍ର-ଆନ୍ଦୋଳନ । ମୁଁ ସେଥିରେ ପଶିଗଲି, ବମ୍ବେ ଗଲି ନାହିଁ, ମୁଁ ନଯିବାରୁ ଭାଇନା ମଧ ଗଲେ ନାହିଁ ।

## (୧୨)

## କଲେଜରେ ଛାତ୍ର ଧର୍ମଘଟ

୧୯୩୮ ମସିହାରେ ରେଭେନ୍ସା କଲେଜରେ ତିନିଗୋଟି ଛାତ୍ର ଧର୍ମଘଟ ହୋଇଗଲା । ଗୋଟିଏ ହେଲା ଆଇନ୍ ଛାତ୍ରଙ୍କ ଧର୍ମଘଟ । କୌଣସି ସ୍ୱତନ୍ତ୍ର ଆଇନ କଲେଜ ନଥିଲା । ସକାଳବେଳା ରେଭେନ୍ସା କଲେଜରେ ଆଇନ-କ୍ଲାସ ଚାଲୁଥିଲା । ଜେ.ଏସ୍.ବାନାର୍ଜୀ ଥିଲେ ମୁଖ୍ୟ ଅଧ୍ୟାପକ । ନାମକୁମାତ୍ର ତାଙ୍କୁ ଅଧକ୍ଷ କୁହାଯାଉଥିଲେ ମଧ ରେଭେନ୍ସା କଲେଜ ଅଧକ୍ଷ ହିଁ ମୁଖ୍ୟ ଥିଲେ । ସ୍ୱତନ୍ତ୍ର ଆଇନ କଲେଜ ପ୍ରତିଷ୍ଠା ଓ ମୁଖ୍ୟ ଅଧ୍ୟାପକଙ୍କୁ ଅଧକ୍ଷ କରିବା ଦାବି ଉପରେ ଆଇନ କ୍ଲାସ ଧର୍ମଘଟ ରେଭେନ୍ସା କଲେଜକୁ ବ୍ୟାପିଲା । ତିନିଦିନ ଧର୍ମଘଟ ପରେ ଧର୍ମଘଟକାରୀ ଛାତ୍ରଙ୍କ ନାମ କଲେଜଖାତାରୁ କାଟି ଦିଆଗଲା । ସମସ୍ୟାର ସମାଧାନ ନିମନ୍ତେ ଛାତ୍ର-ପ୍ରତିନିଧି ଦଳ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ଭେଟିଲେ । ସେତେବେଳକୁ ପ୍ରଧାନମନ୍ତ୍ରୀ କ୍ରୋଧଜର୍ଜ୍ଜରିତ, କାରଣ ଅଧ୍ୟାପକ ବାନାର୍ଜ୍ଜୀ ତାଙ୍କ ନିକଟକୁ କଡ଼ାଭାଷାରେ ପତ୍ର ଲେଖିଛନ୍ତି ଯାହାକି ପ୍ରତ୍ୟାହାର କରିନେବାକୁ ସେ ରାଜି ନୁହଁନ୍ତି । ରେଭେନ୍ସା କଲେଜକୁ ବନ୍ଦ କରିଦେବାକୁ ପ୍ରଧାନମନ୍ତ୍ରୀ ଧମକ ଦେଲେ । ଶେଷରେ ଅଧ୍ୟାପକ ବାନାର୍ଜ୍ଜୀ ଇସ୍ତଫା ଦେଇ କଲିକତା ଚାଲିଗଲେ । ସବୁ ଦଣ୍ଡାଦେଶ ପ୍ରତ୍ୟାହାର ହେଲାପରେ ଧର୍ମଘଟର ଅବସାନ ହେଲା ।

କଲେଜ ଛାତ୍ର-ଇଉନିଅନ୍ କେନ୍ଦ୍ର କରି ଦ୍ୱିତୀୟ ଧର୍ମଘଟ ହୋଇଥିଲା । କଲେଜ ଇଉନିୟନ୍‌ର ମୁଖ୍ୟ ଥିଲେ ଅଧକ୍ଷ ଓ ସେ ଅନ୍ୟାନ୍ୟ କର୍ମକର୍ତ୍ତାଙ୍କୁ ମନୋନୟନ କରୁଥିଲେ । ଛାତ୍ର-ଇଉନିୟନ୍ ଛାତ୍ର ପ୍ରତିନିଧିଙ୍କ ଦ୍ୱାରା ପରିଚାଳିତ ହେଉ । ଏହା ଥିଲା ଦାବି । ଅଧକ୍ଷ ନାରାଜ । ଏ ବିଷୟରେ ଛାତ୍ରମାନଙ୍କ ମତାମତ ନିଆଯାଉ ବୋଲି ସେ ପ୍ରସ୍ତାବ ଦେଲେ । ଅଧ୍ୟାପକ ନିଓଗୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଛାତ୍ର ସଭାରେ ଏ ଦାବି ସପକ୍ଷରେ ବହୁମତ ପ୍ରକାଶ ପାଇଲା । ଉପାୟହୀନ ଅଧକ୍ଷ । ଶେଷରେ ନିର୍ବାଚନ ହେଲା । ମନମୋହନ ମିଶ୍ର ପ୍ରଥମ ସଭାପତି ଭାବେ ନିର୍ବାଚିତ ହେଲେ ।

ମୋର ସହପାଠୀ ଓ ବନ୍ଧୁ ଶ୍ରୀରାମଚନ୍ଦ୍ର ଦାସ ୧୯୩୮ ମସିହାରେ ପୂର୍ବ ଛାତ୍ରାବାସରୁ ଆସି ପଶ୍ଚିମ ଛାତ୍ରାବାସରେ ରହିଲେ । ସେ ଅତି ମେଧାବୀ ଛାତ୍ର ଥିଲେ । ମାଟ୍ରିକ୍ୟୁଲେସନ ଓ ଆଇ.ଏ. ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ତାଙ୍କ ବ୍ୟବହାରରେ ବହୁ ଛାତ୍ରଙ୍କର ସେ ଅପ୍ରିୟଭାଜନ ହୋଇଥିଲେ । ଦିନେ ଖରାବେଳେ କେହି ଜଣେ ତାଙ୍କ ରୁମ୍‌ରେ ନିଆଁ ଲଗାଇ ଦେଲା । ଶ୍ରୀରାମଙ୍କର ଆପତ୍ତି ଅନୁସାରେ ଅଧ୍ୟକ୍ଷ ଏ ଘଟଣା ପାଇଁ ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କୁ ଦୋଷୀ ବିଚାରି କଲେଜରୁ ବହିଷ୍କାର ଆଦେଶ ଦେଲେ । ଏହା ଛାତ୍ର-ଅଶାଂତିକୁ ଇନ୍ଧନ ଯୋଗାଇଲା । ବିନା ବିଚାରରେ ବହିଷ୍କାର ଦଣ୍ଡ ଅନ୍ୟାୟ, ଅସହ୍ୟ ବୋଲି ଛାତ୍ରଗଣ ଧର୍ମଘଟର ଧମକ ଦେଲେ । ଅଧ୍ୟକ୍ଷ ପ୍ରକାଶ୍ୟ-ତଦନ୍ତ ପାଇଁ ରାଜିହେଲେ । ତାଙ୍କ ସହିତ ଅଧ୍ୟାପକ ବଳଭଦ୍ର ପ୍ରସାଦ ଓ ସୁନ୍ଦରମ୍ କମିଟିର ସଭ୍ୟ ହେଲେ । ଛାତ୍ରଗଣଙ୍କ ଉପସ୍ଥିତିରେ ସାକ୍ଷୀଙ୍କ ଜବାନବନ୍ଦି ନିଆଗଲା । ମନେପଡୁଛି ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ଉମାକାନ୍ତ ମିଶ୍ରଙ୍କ ଜମାନବନ୍ଦି । ସେ ଛାତ୍ରାବାସରେ ଶ୍ରୀରାମଙ୍କ ପଡ଼ୋଶୀ ଥିଲେ । ସେ କଲେଜରେ ଥିଲେ ଏବଂ ଘଟଣା ବିଷୟରେ କିଛି ଜାଣନ୍ତିନାହିଁ ବୋଲି କହିଲେ । କାହାକୁ ସନ୍ଦେହ କରୁଛ ବୋଲି ଅଧ୍ୟକ୍ଷଙ୍କ ପ୍ରଶ୍ନର ଉତ୍ତରରେ ସେ ଶ୍ରୀରାମଙ୍କୁ ସଂଦେହ କରୁଛନ୍ତି ବୋଲି କହିବାରୁ ଅଧ୍ୟକ୍ଷଙ୍କ କ୍ରୋଧାନ୍ୱିତ ମୁଖମଣ୍ଡଳର ଦୃଶ୍ୟ ଏବେ ବି ମୋର ମନେଅଛି । କିଛି ପ୍ରମାଣ ମିଳିଲା ନାହିଁ । ଦଣ୍ଡାଦେଶ ପ୍ରତ୍ୟାହୃତ ହେଲା । ପରବର୍ତ୍ତୀ ସମୟରେ ବନ୍ଧୁପ୍ରଫୁଲ୍ଲ ବହୁ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହୋଇଛନ୍ତି, କିନ୍ତୁ ବନ୍ଧୁ ମହଲରେ 'ଘରପୋଡ଼ି ପ୍ରଫୁଲ୍ଲ' ନାଁଟା ରହିଗଲା ।

## (୧୩)

## ବନ୍ଧୁ ଶ୍ରୀରାମଚନ୍ଦ୍ର ଦାସ

ବଂଧୁ ଶ୍ରୀରାମଚନ୍ଦ୍ର ଦାସଙ୍କ କଥା । ୧୯୭୨ ମସିହାରେ ପଶ୍ଚିମ-ଛାତ୍ରାବାସର ସୁବର୍ଣ୍ଣ-ଜୟନ୍ତୀ ଉପଲକ୍ଷେ ଛାତ୍ରାବାସରୁ ପ୍ରକାଶିତ 'ଉର୍ମି' ପତ୍ରିକାରେ ସେ ତାଙ୍କର ପଶ୍ଚିମ ଛାତ୍ରାବାସର ଅନୁଭୂତି ବିଷୟରେ ଲେଖିଛନ୍ତି । ମୋ କଥା ଲେଖିଛନ୍ତି – 'Kuni was a little childishly naughty' –'ଚଗଲା ପିଲା' ବୋଲି ବୁଝିବାକୁ ହେବ । ମୁଁ ମୋର ଉପର ମହଲା ରୁମ୍‌ରେ ଏମିତି ଗଣ୍ଡଗୋଳ କରୁଥିଲି ଯେ ସେ ପାଠପଢ଼ି ପାରୁନଥିଲେ । ରାତି ୧୧ଟା ପରେ ମୁଁ ଶୋଇଲାପରେ ସେ ଯାହା ପଢୁଥିଲେ । ସେଥିପାଇଁ ସକାଳେ ଡେରିରେ ନିଦରୁ ଉଠିବା ଅଭ୍ୟାସ ହୋଇଗଲା ।

ୱାଡ଼େନ୍ ଅଧ୍ୟାପକ ପ୍ରସାଦ ବିରକ୍ତ ହେଲେ । ମୋ ବିଷୟରେ ଅଧକ୍ଷଙ୍କ ଆଗରେ ଆପତ୍ତି କରିବାରୁ ସେ ଓଲଟି ଖପା ହେଲେ ଇତ୍ୟାଦି ଇତ୍ୟାଦି । ସେ ଲେଖାରେ ମୁଁ ତାଙ୍କର ଜଣେ ଘନିଷ୍ଠ-ବନ୍ଧୁ ବୋଲି ସେ ସ୍ୱୀକାର କରିଛନ୍ତି ।

ଦିନକର ଘଟଣା ମନେପଡୁଛି । ଦିନେ ୱାଡେନ୍ ଅଧ୍ୟାପକ ପ୍ରସାଦ ତଦନ୍ତ କରିବାକୁ ଆସିଲେ । ବାରଣ୍ଡାରେ ବହୁ ଛାତ୍ର ଉପସ୍ଥିତ ଥିଲେ । ଅଧକ୍ଷଙ୍କ ପ୍ରଶ୍ନ– ତୁମେ ବିବୁଧେନ୍ଦ୍ର ବହୁତ ଅଶାନ୍ତି ସୃଷ୍ଟି କରୁଛ– ଏହା ହେଲା ଶ୍ରୀରାମଙ୍କର ଆପତ୍ତି । ମୋର ଉତ୍ତର– ସାର୍, ମୁଁ କ'ଣ କେତେବେଳେ ହଷ୍ଟେଲରେ ଥାଏ ? ସେ କହିଲେ, ତୁମେ ନ ଥିଲାବେଳେ ତୁମ ରୁମ୍‌ରୁ ଆଉ କିଏ କରୁଛି । ତୁମେ ଏଥରକ ତାଲାପକାଅ ।

ତାଲା ଆଉ ମୁଁ । ଖଟତଳୁ ମୋ ସୁଟ୍‌କେଶ୍ ବାହାରକରି ଦେଖାଇଦେଲି । ତାଲା ନାହିଁ । ତାଲା ପକାଇଲେ ଚାବି ହଜିଯାଏ ବୋଲି କହିଲି ।

ସେ ବି ଏକ ବିଚାର । ତେବେ କ'ଣ କରିବାକୁ ହେବ ? ମୋତେ ହଠାତ୍ ବୁଦ୍ଧି ଦିଶିଲା । କହିଲି– ସାର୍, ଆପଣ ଏଠାରେ ଜଣେ ପିଅନ୍ ନିଯୁକ୍ତ କରନ୍ତୁ । ଚାବି ତା' ପାଖରେ ରହିବ । ମୁଁ ଆସିଲେ ଖୋଲିବ, ପରେ ବନ୍ଦକରିବ ।

ଆଉ ଗୋଟିଏ ପିଅନ୍ ପୁଣି ଆସିବ କେଉଁଠୁ । ସବୁ ଗଣ୍ଡଗୋଳର କାରଣ 'ଶ୍ରୀରାମ' ବୋଲି ଅଧ୍ୟାପକଙ୍କ ମତକୁ ଉପସ୍ଥିତ ଛାତ୍ରଗଣ ସମର୍ଥନ କଲେ ।

ଆମେ ପରସ୍ପରର ବନ୍ଧୁ ଥିଲୁ । ବହୁ ସଭାସମିତିରେ ଏକାଠି ଯୋଗଦେଇଛୁ । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍‌ରେ ଆମ ଦୁହେଁ ଗୋଟାଏ ସମୟରେ ସଭ୍ୟ ଥିଲୁ । ଓକିଲ ଭାବରେ ପରସ୍ପର ପ୍ରତିବାଦୀ ରୂପେ ଲଢ଼ିଛୁ । ସେ ମୋତେ କହୁଥିଲା 'ଟଗଲା', ମୁଁ ତାକୁ କହୁଥିଲି 'ମୂର୍ଖପାଠୁଆ' । ଅପ୍ରତ୍ୟାଶିତ ଭାବେ ସେ ହଠାତ୍ ବିଦାୟ ନେଇଗଲା ।

## (୧୪)

## ଗଡ଼ଜାତ ଆନ୍ଦୋଳନ

୧୯୩୮ ମସିହା ଗଡ଼ଜାତ ଆନ୍ଦୋଳନ । ସ୍ୱାଧୀନତା-ଆନ୍ଦୋଳନର ଏକ ମହାନ୍ ଅଧ୍ୟାୟ । ଓଡ଼ିଶାର ଛୋଟ ବଡ଼ ସବୁ ଗଡ଼ଜାତରେ ନୂତନ ଆଲୋକର ସନ୍ଧାନ, ରାଜାର ଅକଥନୀୟ ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ରଣଦୁନ୍ଦୁଭିର ଆହ୍ୱାନ ।

ନୀଳଗିରିରେ ଆରମ୍ଭ । ପ୍ରଜାମଣ୍ଡଳର ନେତୃତ୍ୱ ନେଇଥିଲେ ଓକିଲ କୈଳାସ ଚନ୍ଦ୍ର ମହାନ୍ତି ଓ ବନମାଳୀ ଦାସ । ସଭାସମିତି, ହାଟବଜାର ବନ୍ଦ, ରଜାଘର ବାସନ୍ଦ ପ୍ରଭୃତି କାର୍ଯ୍ୟକ୍ରମ ଚାଲିଲା । ଜୋରିମାନା, ଜେଲଦଣ୍ଡ ସତ୍ତ୍ୱେ ଆନ୍ଦୋଳନ ତୀବ୍ରତର

ହେଲା । ରାଜା ସାଲିସ୍ କଲେ, ରାଜବଂଦୀଗଣ ଖଲାସ ହେଲେ । ରାଜାଙ୍କ ସହିତ କଥାବାର୍ତ୍ତାରେ ମହତାବବାବୁ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ତାଳଚେରରେ ପବିତ୍ରମୋହନ ପ୍ରଧାନଙ୍କ ନେତୃତ୍ୱରେ ମଦନମୋହନ ପ୍ରଧାନ, ଦାଶରଥି ପାଣି, କୃତ୍ତିବାସ ରଥ ପ୍ରଭୃତି ଆନ୍ଦୋଳନରେ ବିଶେଷ ଭାଗ ନେଇଥିଲେ । ବହୁ ପ୍ରଜା ଗୁଳିମାଡ଼ରେ ନିହତ ହୋଇଥିଲେ ଓ କାରାବରଣ କରିଥିଲେ । ହଜାର ସଂଖ୍ୟାରେ ପ୍ରଜା ଗଡ଼ ଛାଡ଼ି ନିକଟବର୍ତ୍ତୀ ମୋଗଲବନ୍ଦି ଅଞ୍ଚଳ ଅନୁଗୁଳକୁ ପଳାଇ ଯାଇଥିଲେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶକ୍ରମେ ଏହି ପଦକ୍ଷେପ ନିଆଯାଇଥିଲା ବୋଲି ମହତାବବାବୁ ତାଙ୍କ ଆତ୍ମଜୀବନୀ 'ସାଧନାର ପଥେ'ରେ ଲେଖିଛନ୍ତି ।

ରାଜ-ଅତ୍ୟାଚାରରେ ପ୍ରଥମ ସ୍ଥାନ ଅଧିକାର କରିଥିଲା ଢେଙ୍କାନାଳ । ତାର ପ୍ରତିକ୍ରିୟା ସ୍ୱରୂପ ସେଠାରେ ପ୍ରଜା-ଆନ୍ଦୋଳନ ସମଗ୍ର ଦେଶରେ ଚହଳ ସୃଷ୍ଟିକରିଥିଲା । ତାର ନେତୃତ୍ୱ ନେଇଥିଲେ ବୈଷ୍ଣବ ପଟ୍ଟନାୟକ, ବ୍ରଜକିଶୋର ଧଳ, ମହେଶ ଚନ୍ଦ୍ର ସୁବାହୁ ସିଂହ, କୃତ୍ତିବାସ ପ୍ରଧାନ ଓ ରେଭେନ୍ସା କଲେଜର ତତ୍କାଳୀନ ଛାତ୍ର ହରମୋହନ ପଟ୍ଟନାୟକ । ଏ ଆନ୍ଦୋଳନର ପ୍ରଧାନ ଘଟଣା ହେଉଛି ୧୨ବର୍ଷର ବାଳକ ଓ ତାର ଆଠଜଣ ନାଉରୀ-ସହଯୋଗୀଙ୍କ ପୁଲିସବାହିନୀର ଗୁଳିରେ ମୃତ୍ୟୁ । ଢେଙ୍କାନାଳର ଭୁବନଠାରେ ଆନ୍ଦୋଳନକାରୀଙ୍କ ସହିତ ମୁକାବିଲା କରି ୨୦ଜଣ ସଶସ୍ତ୍ର ପୁଲିସ ନୀଳକଣ୍ଠପୁର ଗ୍ରାମରେ ଡଂଗାରେ ବ୍ରାହ୍ମଣୀ ନଦୀ ପାର ହେବାକୁ ଚାହିଁଲେ । କିନ୍ତୁ ଡଙ୍ଗାଚାଳକ ବାଜି ରାଉତ ଓ ତାର ସହଯୋଗୀମାନେ ଡଙ୍ଗା ଖୋଲିଲେ ନାହିଁ— 'ପ୍ରଜାମଣ୍ଡଳର ହୁକୁମ ନାହିଁ' ବୋଲି କହିଲେ । ଡଙ୍ଗା ଖୋଲିବାକୁ ପୁଲିସବାହିନୀର ଚେଷ୍ଟାକୁ ସେମାନେ ବାଧାଦେବାରୁ ଗୁଳି ଚାଲିଲା, ଯାହାଫଳରେ କି ବାଜି ରାଉତ ଓ ତା'ର ସହଯୋଗୀମାନଙ୍କ ମୃତ୍ୟୁଘଟିଲା । ଏହା ୧୯୩୮ ମସିହା ଅକ୍ଟୋବର ମାସ ୧୦ତାରିଖର ଘଟଣା ।

ଫଳରେ, ଆନ୍ଦୋଳନ ଘନୀଭୂତ ହୋଇଉଠିଲା । ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ମାଳତୀ ଦେବୀ, ଗୌରାଙ୍ଗ ଦାସ, ଛାତ୍ରନେତା ଅନନ୍ତ ପଟ୍ଟନାୟକ, ଭଗବତୀ ପାଣିଗ୍ରାହୀ, ବୈଦ୍ୟନାଥ ରଥ, ରବି ଘୋଷ ପ୍ରମୁଖ କଟକରୁ ଯାଇ ଆନ୍ଦୋଳନରେ ଯୋଗଦେଇ ଅକଥନୀୟ ଅତ୍ୟାଚାରର ଶିକାର ହୋଇଥିଲେ । ପୁଲିସ ଠେଙ୍ଗାମାଡ଼ରେ ଗୌରାଙ୍ଗ ଭାଇ ଅଚେତ ହେବାରୁ ସେ ମରିଗଲେ ବୋଲି ଭାବି ପୁଲିସ ତାଙ୍କୁ ଗୋଟିଏ ଗଛତଳେ ଫୋପାଡ଼ିଦେଇ ଆସିଲେ । ଭାଗ୍ୟକ୍ରମେ ସେ ବଞ୍ଚିଗଲେ ।

ରଣପୁରରେ ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍‌ର ହତ୍ୟା ସମଗ୍ର ପୃଥିବୀରେ କମ୍ପନ ସୃଷ୍ଟି କରିଥିଲା ।

ସେହିଦିନ ପ୍ରଜାମଣ୍ଡଳର ସଭା ହେବ, ରାଜବନ୍ଦୀମାନଙ୍କୁ ରାଜା ଖଲାସ ନକଲେ ଜେଲ ଭଙ୍ଗାଯିବ, ଏହା ଥିଲା କାର୍ଯ୍ୟକ୍ରମ । ପ୍ରଜାମଣ୍ଡଳର ସଭାପତି ଓ ସଂପାଦକ ଯଥାକ୍ରମେ ଥିଲେ ବନମାଳୀ ରାମ ଓ ରଘୁନାଥ ମହାନ୍ତି । ରାଜା ଭୟଭୀତ ହୋଇ ସେତେବେଳେ ନୟାଗଡ଼ରେ ଅବସ୍ଥାନ କରୁଥିବା ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍ ସାହେବଙ୍କୁ ଖବର ଦେଲେ । ସେ ୨୦ଜଣ ସଶସ୍ତ୍ର ପୁଲିସଙ୍କୁ ଧରି ରଣପୁରରେ ପହଁଚି ଦେଖିଲେ ଯେ ରାସ୍ତା ଅବରୁଦ୍ଧ ଓ ଗ୍ରାମବାସୀଗଣ ଠିଆହୋଇଛନ୍ତି । ରାସ୍ତା ସଫା କରିବାପାଇଁ ଆଦେଶକୁ ଗ୍ରାମବାସୀଗଣ ନ ମାନିବାରୁ କ୍ରୋଧାନ୍ୱିତ ସାହେବ ଗୁଳିଚାଳନାର ଆଦେଶ ଦେଲେ । ଫଳରେ ଘଟଣାସ୍ଥଳରେ ଅର୍ଜୁନ ରାଉତ ନାମକ ଜଣେ ଯୁବକଙ୍କର ମୃତ୍ୟୁ ଘଟିଲା । ବିଜୁଳିପରି ଖବର ବ୍ୟାପିଗଲା ଓ ସ୍ୱଳ୍ପ ସମୟ ଭିତରେ ବିଭିନ୍ନ ଆଡୁ ହଜାର ହଜାର ଲୋକ ପହଞ୍ଚିଗଲେ । ସାହେବ ନିଜେ ଗୁଳି ଚଳାଇବାରୁ ଉତ୍ତ୍ୟକ୍ତ ଜନତା ତାଙ୍କୁ ଛେଚି ଛେଚି ମାରିଦେଲେ । ଦୁଇଦିନ କାଳ ଶବ ରାସ୍ତାରେ ପଡ଼ିରହିଲା । ସାହେବ ମରିଗଲା ବୋଲି ଜୟନାଦ ଦେଇ ଲୋକେ ଆନନ୍ଦରେ ନାଚିଲେ ।

ଏହା ପରେ ରାଜ୍ୟଶାସନ ତରଫରୁ ଲୋକଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚାଲିଲା । ବହୁସଂଖ୍ୟାରେ ଗଡ଼ ଲୋକେ କଲିକତା ଓ ରେଙ୍ଗୁନକୁ ପଳାଇଲେ । ହତ୍ୟା-ମକଦ୍ଦମାର ବିଚାର ଆରମ୍ଭ ହେଲା । କଟକର ଓକିଲ ଚିନ୍ତାମଣି ଆଚାର୍ଯ୍ୟ ସରକାରୀ ଓକିଲ ରୂପେ ଓ ତାଙ୍କ ସହଯୋଗୀରୂପେ ଓକିଲ ବିଶ୍ୱେଶ୍ୱର ମହାନ୍ତି ନିଯୁକ୍ତ ହେଲେ । ଦୀନବନ୍ଧୁ ସାହୁ ଓ ଗଦାଧର ଜେନା ମୁଦାଲାମାନଙ୍କ ଓକିଲ ହେଲେ । ମକଦ୍ଦମା-ଖର୍ଚ୍ଚ ପାଇଁ ପାଣ୍ଠି ସଂଗ୍ରହ ଦାୟିତ୍ୱରେ ରହିଲେ ପ୍ରାଣନାଥ ପଟ୍ଟନାୟକ । ବିଚାରରେ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ଫାଶୀଦଣ୍ଡ ଓ ବହୁଜଣଙ୍କ ବିରୁଦ୍ଧରେ ଆଜୀବନ କାରାଦଣ୍ଡ ଆଦେଶ ହେଲା । ସେହି ହତ୍ୟାକାଣ୍ଡରେ ମହତାବବାବୁଙ୍କୁ ଜଡ଼ିତ କରିବା ପାଇଁ ଚେଷ୍ଟା କିପରି ସଫଳ ହେଲା ନାହିଁ, ତାହା ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

ଏ ହତ୍ୟାକାଣ୍ଡପାଇଁ ବେଜେଲଗେଟ୍ ସାହେବ ନିଜେ କେତେଦୂର ଦାୟୀ, ତାର ତଦନ୍ତ ଆବଶ୍ୟକ ବୋଲି ଗାନ୍ଧିଜୀ ମତ ପ୍ରକାଶ କରିଥିଲେ ।

ରଣପୁର ପ୍ରଜା-ମଣ୍ଡଳର ପ୍ରତିଷ୍ଠାତାଗଣ ଥିଲେ ବନମାଳୀ ରାମ, ରଘୁନାଥ ମହାନ୍ତି, ଗଙ୍ଗାଧର ମିଶ୍ର, ଗୋକୁଳ ମୋହନ ରାୟ ଚୂଡ଼ାମଣି, ପ୍ରାଣନାଥ ପଟ୍ଟନାୟକ, ଲକ୍ଷ୍ମଣ ପଟ୍ଟନାୟକ, ଗଙ୍ଗାଧର ପାଇକରାୟ, ରଘୁନାଥ ଦାସ ପ୍ରଭୃତି । ନବକୃଷ୍ଣ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ ଓ ଭଗବତୀ ପାଣିଗ୍ରାହୀ ପ୍ରମୁଖ ସତ୍ୟାଗ୍ରହ କରି ପୁଲିସ ମାଡ଼ରେ ଆହତ ହୋଇଥିଲେ ।

କିନ୍ତୁ ଶେଷରେ ରାଜା ଗାଦିଚ୍ୟୁତ ହେଲେ ଓ ଶାସନଭାର ପଲିଟିକାଲ ଡିପାର୍ଟମେଣ୍ଟ ନିଜ ହାତକୁ ନେଲେ ।

ସୋନପୁର, ନୟାଗଡ଼, ଖଣ୍ଡପଡ଼ା ପ୍ରଭୃତି ବିଭିନ୍ନ ଗଡ଼ଜାତରେ ମଧ ତୀବ୍ର ପ୍ରଜାଆନ୍ଦୋଳନ ହୋଇଥିଲା ।

ଓଡ଼ିଶା ଗଡ଼ଜାତରେ ପ୍ରଜା-ଅତ୍ୟାଚାର ତଦନ୍ତ ପାଇଁ ଗୋଟିଏ କମିଟି ଗଠିତ ହୋଇଥିଲା । ହରେକୃଷ୍ଣ ମହତାବ, ବଳବନ୍ତ ରାୟ ମେହେଟା ଓ ଲାଲମୋହନ ପଟ୍ଟନାୟକ କମିଟିର ସଭ୍ୟ ଥିଲେ ଓ ତା'ର ରିପୋର୍ଟ ଦେଶରେ ଆଲୋଡ଼ନ ସୃଷ୍ଟି କରିଥିଲା ।

## (୧୫)

## କଟକ ମେଡ଼ିକାଲ ସ୍କୁଲ ଧର୍ମଘଟ

କଟକ ମେଡିକାଲ ସ୍କୁଲ ଧର୍ମଘଟ, ୧୯୩୯ ମସିହାର ଗୋଟିଏ ପ୍ରଧାନ ଘଟଣା । ଭାରତରେ କଂଗ୍ରେସ ସରକାର ବିରୁଦ୍ଧରେ ଏହା ପ୍ରଥମ ଧର୍ମଘଟ ଭାବେ ସ୍ୱୀକୃତି ଲାଭ କରିଥିଲା । କଟକ ମେଡ଼ିକାଲ ସ୍କୁଲ ଦେଶର ଦ୍ୱିତୀୟ ଡାକ୍ତରି ଶିକ୍ଷାନୁଷ୍ଠାନ । କିନ୍ତୁ ତାର ଶୋଚନୀୟ ଅବସ୍ଥା ବର୍ଣ୍ଣନାତୀତ ଥିଲା । ସ୍ଥାୟୀ ଶିକ୍ଷକ ନଥିଲେ । କଟକରେ ଅବସ୍ଥାପିତ ସରକାରୀ ଡାକ୍ତରଗଣ ଶିକ୍ଷକତା କରୁଥିଲେ, ସିଭିଲ୍ ସର୍ଜନ ଅଧକ୍ଷ ହେଉଥିଲେ । ଲାଇବ୍ରେରୀରେ ବହି, ହଷ୍ଟେଲରେ ପାଣି ଓ ଆଲୁଅର ଘୋର ଅସୁବିଧା । ଅଧିକାଂଶ ଶିକ୍ଷକ ଓ ନର୍ସ ଅଣଓଡ଼ିଆ । ସେମାନେ ଛାତ୍ରମାନଙ୍କ ସହିତ ଦୁର୍ବ୍ୟବହାର କରୁଥିଲେ । ଏହାର ପ୍ରତିବାଦରେ ଧର୍ମଘଟ ଯୋଗୁ ଛାତ୍ର ନରସିଂହ ସାମନ୍ତସିଂହାର, ମୋତିଲାଲ ତ୍ରିପାଠୀ, ମହମ୍ମଦ ସାମସୁଲ ହୋଜା ସ୍କୁଲରୁ ବହିଷ୍କୃତ ହେଲେ । ଫଳରେ ଅଶାନ୍ତି ବଢ଼ିଚାଲିଲା । ଛାତ୍ରଗଣଙ୍କର ଆକସନ୍ କମିଟି ଗଠିତ ହୋଇ 'ମେଡ଼ିକାଲ ଅଶାନ୍ତି' ନାମରେ ଲିଫଲେଟ୍ ପ୍ରକାଶ ପାଇଲା । ସ୍କୁଲର ଛାତ୍ରଗଣ ଛାତ୍ରସଂଘର ସାହାଯ୍ୟ ଲୋଡ଼ିଲେ । ସେତେବେଳକୁ ପୂର୍ବବର୍ଣ୍ଣିତ କେତୋଟି ଆନ୍ଦୋଳନ ଫଳରେ ଛାତ୍ର-ସଂଗଠନ ମଜଭୁତ ହୋଇସାରିଥାଏ । ଆଶା କରାଯାଉଥିଲା ଯେ କଂଗ୍ରେସ ସରକାର ପରିସ୍ଥିତିକୁ ସୁଧାରିବାକୁ ଚେଷ୍ଟାକରିବେ, କିନ୍ତୁ ସରକାରଙ୍କ ନୀରବତା ବଡ଼ ବାଧିଲା । ଆନ୍ଦୋଳନକୁ ତୀବ୍ରତର କରିବା ଛଡ଼ା ଅନ୍ୟ କିଛି ଉପାୟ ରହିଲା ନାହିଁ । ଏବେ କଟକ ଚଉଧୁରୀବଜାର ଗୌରୀଶଙ୍କର ପାର୍କ ନିକଟରେ ଯେଉଁ କୋଠା ଘରେ ସିଟି ହସ୍ପିଟାଲ ଚାଲିଛି, ସେତେବେଳେ ତାହା ଥିଲା ଓଡ଼ିଶା ସରକାରଙ୍କ ସେକ୍ରେଟାରିଏଟ୍ ।

ସେକ୍ରେଟାରିଏଟ୍ ସାମନାରେ ସତ୍ୟାଗ୍ରହ କରିବାର ନିଷ୍ପତ୍ତି ନିଆଗଲା । ଜନସାଧାରଣଙ୍କ ସମର୍ଥନ ନିମନ୍ତେ ସଚ୍ଚି ରାଉତରାୟଙ୍କ ସଂପାଦନାରେ 'ଛାତ୍ର' ନାମକ ଏକ ଦୈନିକ ବୁଲେଟିନ୍ ପ୍ରକାଶ ପାଇଲା । ତାର ଦାମ୍ ଥିଲା ଏକ ପଇସା । ଛାତ୍ରମାନେ ବୁଲି ବୁଲି ତାହା ବିକ୍ରିକରୁଥିଲେ ।

ତାହାକୁ ଲୋକେ ଟଙ୍କାଏ ଦେଇ କିଣିଲେ, ସେଥିରୁ ଜନସମର୍ଥନ ଜଣାପଡ଼ିବ । ତାହା ହେଲା ଛାତ୍ରସଂଘର ପାଣ୍ଠି । ମେଡ଼ିକାଲ ସ୍କୁଲରେ କ୍ୟାଂପ ପଡ଼ିଲା, ଓଡ଼ିଶାର ବିଭିନ୍ନ ସ୍କୁଲରୁ ବହୁ ଛାତ୍ର ସତ୍ୟାଗ୍ରହୀ ହେବାକୁ ରାଜିହୋଇ ସେଠାରେ ରହିଲେ ।

ସତ୍ୟାଗ୍ରହ ଆରମ୍ଭ ହେଲା ଏପ୍ରିଲ ମାସରେ । କଂଗ୍ରେସ-ଢାଞ୍ଚା ଅନୁଯାୟୀ ସତ୍ୟାଗ୍ରହ ପରିଚାଳନା ପାଇଁ 'ଡିକ୍ଟେଟର' ନିଯୁକ୍ତ ହେଲେ । ପ୍ରତ୍ୟେକ ଦିନ ଜଣେ ଡିକ୍ଟେଟରଙ୍କ ନେତୃତ୍ୱରେ ଦଳେ ଛାତ୍ର ଶୋଭାଯାତ୍ରାରେ ଯାଇ ସେକ୍ରେଟାରିଏଟ୍ ସାମନାରେ ସତ୍ୟାଗ୍ରହ କରି ଗିରଫ ହେଉଥିଲେ । ବିଭିନ୍ନ ଦିନର ଡିକ୍ଟେଟରଗଣ ହେଲେ ଯଥାକ୍ରମେ ବିଶ୍ୱନାଥ ପଶାୟତ, ହରିଚରଣ ଦାସ, ମନମୋହନ ମିଶ୍ର, ନୀଳମଣି ରାଉତରାୟ, ମୁଁ , ଗିରିଜାଶଙ୍କର ବହିଦାର, ବୀରେନ୍ ମିତ୍ର, ବଳରାମ ମହାନ୍ତି, ନଟଗୋପାଳ ଦାସ, ଗୋବିନ୍ଦ ଚନ୍ଦ୍ର ମହାନ୍ତି ଓ ସୁଧୀର କବି । କଟକ ଜେଲ ଭରପୂର ହୋଇଗଲା । ଜେଲ୍ ଭିତରେ ଆମର ବିଚାର ହେଲା—ମାଜିଷ୍ଟ୍ରେଟ ଭଗବାନ ମହାପାତ୍ର । ପ୍ରକାଶ୍ୟ ବିଚାର ହେବା ଉଚିତ ବୋଲି କଟକ ଓକିଲ ସଂଘ ମତପ୍ରକାଶ କରିଥିଲେ । ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ କଟକ କଂଗ୍ରେସ କମିଟି ବୈଠକରେ ସମାଧାନ ଲାଗି ସରକାରଙ୍କୁ ଅନୁରୋଧ କରାଯାଇଥିଲା । ବିଧାନସଭାରେ ମଧ୍ୟ କେତେକ କଂଗ୍ରେସ ସଭ୍ୟ ଅନୁରୂପ ଦାବି କରିଥିଲେ । ସମାଧାନ ପାଇଁ ପ୍ରାଦେଶିକ କଂଗ୍ରେସ ସଭାପତି ନୀଳକଣ୍ଠ ଦାସ ଉଦ୍ୟମ କରିଥିଲେ ଓ ହସ୍ତକ୍ଷେପ କରିବାପାଇଁ ନିଖିଳ ଭାରତ କଂଗ୍ରେସ ସଭାପତି ସୁଭାଷ ଚନ୍ଦ୍ର ବୋଷଙ୍କୁ ଅନୁରୋଧ କରିଥିଲେ ।

ସମସ୍ୟାର ସମାଧାନ ପାଇଁ କଂଗ୍ରେସ ସଭାପତି ବୋଷ ବଙ୍ଗଳାର ବରିଷ୍ଠ ଛାତ୍ରନେତା ବିଶ୍ୱନାଥ ମୁଖାର୍ଜୀଙ୍କୁ ତାଙ୍କ ପ୍ରତିନିଧିରୂପେ ପଠାଇଲେ ଓ ସେ ଆସି କଂଗ୍ରେସ ମନ୍ତ୍ରୀଙ୍କ ସହିତ ଆଲୋଚନା କଲେ । ପ୍ରବଳ ଚାପର ସମ୍ମୁଖୀନ ହୋଇ ସରକାର ମୁଣ୍ଡ ନୁଆଁଇଲେ । ସମସ୍ତ ଦଣ୍ଡାଦେଶକୁ ପ୍ରତ୍ୟାହାର କରାଯିବ ଓ ସବୁ ଛାତ୍ରଙ୍କୁ ଜେଲରୁ ଖଲାସ କରାଯିବ ବୋଲି ଘୋଷଣା ପ୍ରକାଶ ପାଇଲା । ମନେପଡୁଛି, ଖଲାସ ହେବା ଦିନ ସନ୍ଧ୍ୟାରେ ଟାଉନ୍‌ହଲ ପଡ଼ିଆରେ ଆମର 'ବିଜୟ ଦିବସ' ପାଳନ ।

## (୧୬)

# ମଧୁସୂଦନ ମହାନ୍ତି

ମନେପଡୁଛି, କଟକର ଓକିଲ ମଧୁସୂଦନ ମହାନ୍ତିଙ୍କ କଥା । ଏ ଆନ୍ଦୋଳନରେ ତାଙ୍କ ସାହାଯ୍ୟ ଭୁଲିହେବ ନାହିଁ । 'ଅବ୍‌ଜର୍ଭର ପ୍ରେସ'ର ସେ ସ୍ୱତ୍ୱାଧିକାରୀ ଥିଲେ ଓ ସେହି ପ୍ରେସ୍‌ରୁ 'ଛାତ୍ର' ବୁଲେଟିନ୍ ପ୍ରକାଶ ପାଉଥିଲା । ସେଥିପାଇଁ ତାଙ୍କ ବିରୁଦ୍ଧରେ ମଧ ସରକାରଙ୍କ ତରଫରୁ ଗୋଟିଏ ମକଦ୍ଦମା ଦାଏର ହୋଇଥିଲା । ସେହି ବର୍ଷ ପ୍ରାଦେଶିକ କଂଗ୍ରେସ କମିଟି ସଭ୍ୟ ନିର୍ବାଚନରେ ସେ କଟକ ସହର ନିର୍ବାଚନମଣ୍ଡଳୀରୁ ନବକୃଷ୍ଣ ଚୌଧୁରୀଙ୍କ ସହିତ ପ୍ରତିଦ୍ୱନ୍ଦିତା କରିଥିଲେ । କଟକ ସ୍ୱରାଜ୍ୟାଶ୍ରମ ଭୋଟକେନ୍ଦ୍ର ଥିଲା । ପ୍ରିଜାଇଡିଂ ଅଫିସର ଥିଲେ ଆଡ଼ଭୋକେଟ ହରିହର ମହାପାତ୍ର । ନବବାବୁଙ୍କ ପୋଲିଂ ଏଜେଣ୍ଟ ବୈଦ୍ୟନାଥ ରଥ ଓ ମଧୁବାବୁଙ୍କ ଏଜେଣ୍ଟ ବୀରେନ୍ ମିତ୍ର ଓ ସୁରଜ୍‌ମଲ୍ଲ ସାହା । ଭୋଟ-କେନ୍ଦ୍ରର ଦୁଆରମୁହଁରେ ବଇଦା ଭାଇନା ନବବାବୁଙ୍କ ସପକ୍ଷରେ ପ୍ରଚାର କରୁଛନ୍ତି ବୋଲି ଅଭିଯୋଗ କରି ସୁରଜ୍ ଭୋଟ୍‌କେନ୍ଦ୍ର ଦୁଆରେ ତାଲା ପକାଇ ଦେଇଥିଲା ଓ ହରିଭାଇନାଙ୍କ ହାତରୁ ଭୋଟର ତାଲିକା ଛଡ଼ାଇନେଇଥିଲା ।

ଅଳ୍ପ ଭୋଟରେ ମଧୁବାବୁ ହାରିଗଲେ । ତାଙ୍କୁ ସାନ୍ତ୍ୱନା ଦେବାପାଇଁ ଆମେ କେତେଜଣ ଛାତ୍ର ତାଙ୍କ ଘରେ ପହଞ୍ଚି ଦେଖିଲୁ ଯେ ସେ ଖୁବ୍ ପ୍ରଫୁଲ୍ଲ ଅଛନ୍ତି । ସେ ଅଙ୍କ କଷିସାରିଛନ୍ତି– ପ୍ରଥମ ପ୍ରାର୍ଥୀତ୍ୱରେ ଯଦି ଏତେ କମ୍ ଭୋଟ ବ୍ୟବଧାନ, ତେବେ ଆସନ୍ତା ବର୍ଷର ନିର୍ବାଚନରେ ତାଙ୍କର ବିଜୟ ସୁନିଶ୍ଚିତ । ଧନ୍ୟ ମଧୁବାବୁଙ୍କ ଅଙ୍କ !

## (୧୭)

# ତ୍ରିପୁରୀ କଂଗ୍ରେସ

୧୯୩୯ ମସିହା–କଂଗ୍ରେସ ଇତିହାସର ଏକ କଳଙ୍କମୟ ଅଧ୍ୟାୟ–ଗଣତନ୍ତ୍ର ହତ୍ୟାର ଏକ ନଗ୍ନ ପ୍ରକାଶ ।

ସୁଭାଷ ବୋଷ ଓ ପଣ୍ଡିତ ଜବାହରଲାଲ ନେହୁରୁ ଗାନ୍ଧୀଜୀଙ୍କର ବହୁ ନିଷ୍ପତ୍ତିକୁ ବିରୋଧ କରିଥିଲେ । ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନ ଜୋରସୋର୍‌ରେ ଚାଲିଥିବାବେଳେ ଉତ୍ତ୍ୟକ୍ତ ଜନତା ପୁଲିସ୍ ଫାଣ୍ଡିରେ ନିଆଁ ଲଗାଇଦେବାରୁ ଅନେକ ପୁଲିସ ମରିଗଲେ । ହିଂସା ହୋଇଗଲା ବୋଲି ଗାନ୍ଧିଜୀ ଆନ୍ଦୋଳନ ବଂଦକରି

ଦେବାବେଳେ ବିରୋଧ, ୧୯୨୮ ମସିହାରେ କଲିକତା କଂଗ୍ରେସରେ ଔପନିବେଶିକ ସ୍ୱାଧୀନତାକୁ ବିରୋଧକରି ପୂର୍ଣ୍ଣ ସ୍ୱାଧୀନତା କଂଗ୍ରେସର ଲକ୍ଷ୍ୟ ହେଉ ବୋଲି ଦାବି, ୧୯୩୧ ମସିହାରେ ଲବଣ ସତ୍ୟାଗ୍ରହକୁ ବନ୍ଦକରି ଗୋଲଟେବୁଲ ବୈଠକରେ ଗାଂଧିଜୀଙ୍କ ଯୋଗଦାନ, ୧୯୩୬ ମସିହାରେ ପ୍ରାଦେଶିକ ବ୍ୟବସ୍ଥାସଭା ନିର୍ବାଚନରେ କଂଗ୍ରେସର ଯୋଗଦାନ ପ୍ରଭୃତିକୁ ଉଭୟେ ବିରୋଧ କରିଥିଲେ । କିନ୍ତୁ ନେହୁରୁ କେବେହେଲେ ଗାନ୍ଧିଜୀଙ୍କୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ—ଗାନ୍ଧିଜୀଙ୍କ ବିନା କଂଗ୍ରେସ ତିଷ୍ଠିପାରିବନାହିଁ ବୋଲି ତାଙ୍କର ମତ ଥିଲା । ବୋଷ ଥିଲେ ବିଦ୍ରୋହୀ, ନେହୁରୁଙ୍କ ମତକୁ ସେ ଗ୍ରହଣ କରୁନଥିଲେ । ବୋଷଙ୍କୁ ନିୟନ୍ତ୍ରଣରେ ରଖିବାପାଇଁ ଗାନ୍ଧିଜୀ ୧୯୩୮ ମସିହା ହରିପୁରା କଂଗ୍ରେସର ସଭାପତି ପଦ ନିମନ୍ତେ ତାଙ୍କ ନାମ ପ୍ରସ୍ତାବ କଲେ । ବୋଷ ସଭାପତି ହେଲେ, କିନ୍ତୁ ଗାନ୍ଧିଜୀଙ୍କ ଆଶା ସଫଳ ହେଲା ନାହିଁ । ୧୯୩୯ ମସିହା ଶେଷଭାଗ ବେଳକୁ ବିଶ୍ୱଯୁଦ୍ଧ ସୁନିଶ୍ଚିତ, ତାହାହିଁ ହେବ ଗଣଆନ୍ଦୋଳନର ପ୍ରକୃଷ୍ଟ ସମୟ—ଏହି ବିଚାରରେ କଂଗ୍ରେସକୁ ଏକ ସମାନ୍ତରାଳ ସରକାର ରୂପେ ପ୍ରତିଷ୍ଠା କରି ଗଣଆନ୍ଦୋଳନର ପ୍ରସ୍ତୁତି ନିମନ୍ତେ ବୋଷ ଆହ୍ୱାନ ଦେଲେ । ଗଣଆନ୍ଦୋଳନର ସମୟ ଆସିନାହିଁ, ଏବେ ଆନ୍ଦୋଳନ ହେଲେ ହିଂସା ବ୍ୟାପକ ହେବ ବୋଲି ଗାନ୍ଧିଜୀ ମତ ଦେଲେ । ବୋଷ ଅହିଂସା ନୀତିରେ ବିଶ୍ୱାସ କରୁନଥିଲେ । 'ଇଂରେଜଙ୍କ ଶତ୍ରୁ ଆମର ମିତ୍ର' ବୋଲି ବୋଷଙ୍କ ଉକ୍ତିକୁ ମଧ୍ୟ ଗାଂଧିଜୀ ଗ୍ରହଣ କରିନଥିଲେ ।

୧୯୩୯ ମସିହା, ତ୍ରିପୁରୀ କଂଗ୍ରେସର ସଭାପତି କିଏ ହେବ ? ଆନ୍ତର୍ଜାତିକ ପରିସ୍ଥିତି ବିଚାରରେ ଜଣେ ବାମପନ୍ଥୀ ନେତା ସଭାପତି ହେବା ଉଚିତ ବୋଲି ମତଦେଇ ବୋଷ ବିଶିଷ୍ଟ ସମାଜବାଦୀ ନେତା ଆଚାର୍ଯ୍ୟ ନରେନ୍ଦ୍ରଦେବଙ୍କ ନାମ ପ୍ରସ୍ତାବ କରିଥିଲେ । କିନ୍ତୁ ଗାନ୍ଧିଜୀ ତାହା ଗ୍ରହଣ ନ କରିବାରୁ, ବୋଷ ନିଜେ ପ୍ରାର୍ଥୀ ହେବାକୁ ନିଷ୍ପତ୍ତି ନେଲେ । ଗାନ୍ଧିଜୀଙ୍କ ମନୋନୀତ ପ୍ରାର୍ଥୀ ହେଲେ ଡାକ୍ତର ପଟ୍ଟାଭି ସୀତାରାମାୟା ।

କଂଗ୍ରେସ ଇତିହାସରେ ସଭାପତି ପଦ ପାଇଁ ଏପରି ପ୍ରତିଦ୍ୱନ୍ଦ୍ୱିତା କେବେ ହୋଇ ନଥିଲା । ଏକ ଦିଗରେ ଗାନ୍ଧିଜୀ ଓ ତାଙ୍କ ସହିତ ପଣ୍ଡିତ ନେହୁରୁ, ସର୍ଦ୍ଦାର ପଟେଲ, ରାଜେନ୍ଦ୍ରପ୍ରସାଦ, ମୌଲାନା ଆବୁଲକାଲାମ ଆଜାଦ ପ୍ରଭୃତି ତୁଙ୍ଗ ନେତାଗଣ— ଅନ୍ୟ ଦିଗରେ ସୁଭାଷ ବୋଷ ଓ ତାଙ୍କର ସମର୍ଥକ ସମାଜବାଦୀ ଦଳ, କମ୍ୟୁନିଷ୍ଟ ଦଳ, କୃଷକସଭା ଓ ଏମ୍.ଏନ୍.ରାୟଙ୍କ ଦଳ । କଂଗ୍ରେସରେ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ଶକ୍ତିର ଲଢ଼େଇ ।

ଭୋଟ ଦିନ କଥା ମନେଅଛି । ସେତେବେଳେ ଓଡ଼ିଆବଜାରରେ ଅବସ୍ଥିତ ଜାନକୀନାଥ ଭବନରେ କଂଗ୍ରେସ ଅଫିସ ଥାଏ । ୧୯୩୮ ମସିହାରେ ବୋଷ ହରେକୃଷ୍ଣ

ମହତାବଙ୍କୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟରୂପେ ମନୋନୀତ କରିଥିଲେ । ସେ କିନ୍ତୁ କାର୍ଯ୍ୟକାରୀ କମିଟିର ଅନ୍ୟାନ୍ୟ ସଭ୍ୟଙ୍କ ଭଳି ବୋଷଙ୍କ ପ୍ରାର୍ଥୀତ୍ୱକୁ ବିରୋଧ କରିଥିଲେ । ମନେଅଛି, ଆମେ କେତେକ ଛାତ୍ର ଜାନକୀନାଥ ଭବନକୁ ଯାଇ 'ସୁଭାଷବାବୁଙ୍କୁ ଭୋଟ ଦିଅନ୍ତୁ' ବୋଲି ସ୍ଲୋଗାନ ଦେବାରୁ ପ୍ରାଦେଶିକ କଂଗ୍ରେସ କମିଟିର କେତେକ ସଭ୍ୟ ବଳପ୍ରୟୋଗ କରି ଆମକୁ ତଡ଼ିଦେବାକୁ ଉଦ୍ୟମ କରିଥିଲେ । ପଣ୍ଡିତ ନେହୁରୁଙ୍କ ଉତ୍ତରପ୍ରଦେଶରେ ବୋଷ ତାଙ୍କ ପ୍ରତିଦ୍ୱନ୍ଦ୍ୱୀଙ୍କଠାରୁ ଅଧିକ ଭୋଟ ପାଇଥିଲେ ମଧ୍ୟ ତାଙ୍କ ନିଜ ବାସଭବନରେ ହୋଇଥିବା ଭୋଟଗଣତିରେ ହାରିଥିଲେ । ଶେଷରେ ୧୯୩୯ ମସିହା ଜାନୁଆରୀ ୨୯ତାରିଖ ଦିନ କଂଗ୍ରେସ ସଭାପତି ରୂପେ ସେ ନିର୍ବାଚିତ ହେଲେ । ତାଙ୍କର ଭୋଟସଂଖ୍ୟା ଥିଲା ୧୫୮୦ ଓ ପଟ୍ଟାଭିଙ୍କର ୧୩୭୫ ।

ତା'ପରେ ଆରମ୍ଭ ହେଲା ଚକ୍ରାନ୍ତର ଦ୍ୱିତୀୟପର୍ବ । ଏପରି ଫଳାଫଳ ହେବ ବୋଲି ଗାନ୍ଧିଜୀ ଓ ଦକ୍ଷିଣପନ୍ଥୀ ନେତୃବୃନ୍ଦ କେବେ ଭାବିନଥିଲେ । ଗଣତନ୍ତ୍ରନିୟମ ଅନୁଯାୟୀ ଅଧିକ ସଂଖ୍ୟକ ଭୋଟରେ ନିର୍ବାଚିତ ହୋଇଥିବା ସଭାପତିଙ୍କୁ ସମର୍ଥନ ଦେବା କଥା– କିନ୍ତୁ ତା ହେଲାନାହିଁ । ଗାନ୍ଧିଜୀଙ୍କ ବିବୃତି ଦୁଇ ମତବାଦୀଙ୍କ ଭିତରେ ଏକ ଘାଇ ସୃଷ୍ଟି କଲା । ପଟ୍ଟାଭି ତାଙ୍କ ମନୋନୀତ ପ୍ରାର୍ଥୀ ହୋଇଥିବା ଯୋଗୁ ତାଙ୍କ ପରାଜୟ ମୋର ପରାଜୟ ବୋଲି ଗାନ୍ଧିଜୀ ବିବୃତି ଦେଲେ । ତାଙ୍କ କହିବା କଥାର ସାରମର୍ମ ହେଲା ନିର୍ବାଚନର ଫଳାଫଳ ପ୍ରମାଣିତ କରିଛି ଯେ ତାଙ୍କ କାର୍ଯ୍ୟକ୍ରମକୁ କଂଗ୍ରେସ ପ୍ରତ୍ୟାଖ୍ୟାନ କରିଛି । ଏଣିକି କଂଗ୍ରେସ ସଭାପତି ନିଜ ନୀତି ଅନୁଯାୟୀ କଂଗ୍ରେସର ପରିଚାଳନା କରନ୍ତୁ । ସେ ବିବୃତି ଥିଲା ଏକ ବଜ୍ରପାତ ।

ମାର୍ଚ୍ଚ ୧୦ତାରିଖରେ କଂଗ୍ରେସ ଅଧିବେଶନ ବସିଲା । ସେତେବେଳକୁ ବୋଷ ଅସୁସ୍ଥ । ଷ୍ଟ୍ରେଚରରେ ବୁହାଯାଇ ସେ ତ୍ରିପୁରୀରେ ପହଞ୍ଚିଲେ । କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟଗଣ ଇସ୍ତଫା ଦେଲେ । ଗାନ୍ଧିଜୀ ତ୍ରିପୁରୀକୁ ଆସିଲେ ନାହିଁ । ସଭାପତି ଅଭିଭାଷଣ ସୁଭାଷଙ୍କ ବଡ଼ଭାଇ ଶରତଚନ୍ଦ୍ର ବୋଷ ପାଠକଲେ । ସେଥିରେ କୁହାଯାଇଥିଲା ଯେ, ଆସନ୍ତା ଛ'ମାସ ଭିତରେ ବିଶ୍ୱଯୁଦ୍ଧ ଆରମ୍ଭ ହେବା ସୁନିଶ୍ଚିତ, ଏହା ହେଉଛି ଗଣଆନ୍ଦୋଳନର ପ୍ରକୃଷ୍ଟ ସମୟ । ୬ମାସ ଭିତରେ ଭାରତ ଛାଡ଼ି ଚାଲିଯିବାକୁ ଇଂରେଜ ସରକାରକୁ ଚରମପତ୍ର ଦେଇ ଗଣସଂଗ୍ରାମର ପ୍ରସ୍ତୁତି ଆରମ୍ଭ ହେଉ ।

ଅନ୍ୟଦିଗରେ, ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ଗୋବିନ୍ଦବଲ୍ଲଭ ପନ୍ଥ ଗୋଟିଏ ପ୍ରସ୍ତାବ ଆଣିଲେ । ତାହା ପନ୍ଥ-ପସ୍ତାବ ନାମରେ ଖ୍ୟାତ । ସେଥିରେ କୁହାଯାଇଥିଲା ଯେହେତୁ ଗାନ୍ଧିଜୀଙ୍କ ନେତୃତ୍ୱ ବିନା ସ୍ୱାଧୀନତା ସଂଗ୍ରାମ ପରିଚାଳନା ଅସମ୍ଭବ, ତେଣୁ ତାଙ୍କ ପରାମର୍ଶ ଅନୁଯାୟୀ କଂଗ୍ରେସ ସଭାପତି କାର୍ଯ୍ୟକାରୀ କମିଟି ଗଠନ କରନ୍ତୁ ।

ଏହା ଏକ ଅଗଣତାନ୍ତ୍ରିକ ପ୍ରସ୍ତାବ ବୋଲି ସେତେବେଳେ ବହୁ ସଂବାଦପତ୍ର ଓ ବୁଦ୍ଧିଜୀବୀ ମତ ଦେଇଥିଲେ। କଂଗ୍ରେସ ସମ୍ବିଧାନ ଅନୁଯାୟୀ, କାର୍ଯ୍ୟକାରୀ କମିଟି ମନୋନୟନ ସଭାପତିଙ୍କ କ୍ଷମତା ଅନ୍ତର୍ଭୁକ୍ତ। ତାଙ୍କୁ କ୍ଷମତାଚ୍ୟୁତ କରିବା କଂଗ୍ରେସ ସମ୍ବିଧାନର ବିରୋଧ କରୁଛି। ବୋଷ ଚାହିଁଥିଲେ ସେ ପ୍ରସ୍ତାବକୁ ନାକଚ କରିଦେଇପାରିଥାନ୍ତେ, ତେବେ କଂଗ୍ରେସର ଏକତାରକ୍ଷା ଦୃଷ୍ଟିରୁ ସେ ତାହା କଲେ ନାହିଁ।

ଗାନ୍ଧିଜୀଙ୍କ ବିବୃତି ବାମପନ୍ଥୀ ଏକତାକୁ ଭାଙ୍ଗିଦେଲା। କଂଗ୍ରେସରେ ଥିବା ସବୁଠାରୁ ବଡ଼ ବାମପନ୍ଥୀ କଂଗ୍ରେସ ସମାଜବାଦୀ ଦଳ ଭୋଟରେ ଭାଗ ନେଲେ ନାହିଁ, ଯଦିବା ସେମାନେ ସଭାପତି ନିର୍ବାଚନରେ ବୋଷଙ୍କୁ ଭୋଟ ଦେଇଥିଲେ। ଅଧିବେଶନରେ ପନ୍ଥ-ପ୍ରସ୍ତାବ ଗୃହୀତ ହୋଇଗଲା। ମନେପଡୁଛି, ରେଭେନ୍ସା କଲେଜରେ ଏକ ଛାତ୍ରସଭାରେ 'ପନ୍ଥ ପ୍ରସ୍ତାବ'କୁ ନାପସନ୍ଦକରି ଆମେ ଏକ ପ୍ରସ୍ତାବ ଗ୍ରହଣ କରିଥିଲୁ।

ପରବର୍ତ୍ତୀ ଦୃଶ୍ୟପଟ। ପନ୍ଥ-ପ୍ରସ୍ତାବକୁ ମାନିନେଇ ବୋଷ କାର୍ଯ୍ୟକାରୀ କମିଟି ସଭ୍ୟ ବିଷୟରେ ଗାନ୍ଧିଜୀଙ୍କୁ ସାକ୍ଷାତ କଲେ ଏବଂ ପତ୍ର ଲେଖିଲେ। ଲୋକଙ୍କ ବିଶ୍ୱାସଭାଜନ ହୋଇଥିଲେ ମଧ୍ୟ, ଭାରତର ତୁଙ୍ଗ ଜନନାୟକ, ଗାନ୍ଧିଜୀଙ୍କ ବିଶ୍ୱାସଭାଜନ ହୋଇ ନ ପାରିଲେ ତାହା ତାଙ୍କର ଦୁର୍ଭାଗ୍ୟ ହେବ ବୋଲି କହିଲେ। ପରିସ୍ଥିତିର ସମାଧାନ ପାଇଁ ପଣ୍ଡିତ ନେହୁରୁ ବହୁ ଉଦ୍ୟମ କରିଥିଲେ। ବୋଷଙ୍କୁ ସଭାପତି ରୂପେ ଗ୍ରହଣ ନ କରିବା ଭୁଲ ହେବ ଏବଂ କାର୍ଯ୍ୟକାରୀ କମିଟିର ସଭ୍ୟ ବିଷୟରେ ଗାନ୍ଧିଜୀ ମତାମତ ଜଣାନ୍ତୁ ବୋଲି ତାଙ୍କୁ ପତ୍ର ଲେଖିଲେ। ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଶେଷକୁ'ଜନନାୟକ' ଆଖ୍ୟା ଦେଇ ତାଙ୍କ ସଭାପତି କାର୍ଯ୍ୟରେ ସାହାଯ୍ୟ କରିବାକୁ ଗାନ୍ଧିଜୀଙ୍କୁ ଅନୁରୋଧ କଲେ।

ଗାନ୍ଧିଜୀଙ୍କ ଉତ୍ତର ହେଲା—'ଉଭୟେ ନେହୁରୁ ଓ ବୋଷ ମୋର ସନ୍ତାନ, କିନ୍ତୁ ବୋଷ ଅବାଧ ସନ୍ତାନ। ତଥାପି ଗାନ୍ଧିଜୀ ଅଟଳ—ଏକ ତ୍ରିଶଙ୍କୁ ଅବସ୍ଥାର ସୃଷ୍ଟି। ଅନନ୍ୟୋପାୟ ହୋଇ ବୋଷ ନିଖିଳ ଭାରତ କଂଗ୍ରେସ କମିଟିର କଲିକତା ଅଧିବେଶନରେ ସଭାପତି ପଦରୁ ଇସ୍ତଫା ଦେଲେ। ଇସ୍ତଫାପତ୍ର ପ୍ରତ୍ୟାହାର କରିବାକୁ ନେହୁରୁ ଓ ଜୟପ୍ରକାଶ ନାରାୟଣଙ୍କ ଅନୁରୋଧକୁ ସେ ଗ୍ରହଣ କଲେ ନାହିଁ। ରାଜେନ୍ଦ୍ରପ୍ରସାଦ ସଭାପତି ହେଲେ, କାର୍ଯ୍ୟକାରୀ କମିଟିର ସଭ୍ୟ ହେବାକୁ ଉଭୟ ନେହୁରୁ ଓ ବୋଷ ରାଜି ହେଲେ ନାହିଁ।

ବୋଷଙ୍କ ବିଷୟରେ ନେହୁରୁଙ୍କ ମନୋଭାବ ସ୍ପଷ୍ଟ। ବୋଷ ସଭାପତି ହୋଇ ରହିବାରେ ତାଙ୍କର କୌଣସି ଆପତ୍ତି ନଥିଲା। ତେବେ ସେ କାହିଁକି ନିର୍ବାଚନରେ

ତାଙ୍କର ବିରୋଧ କଲେ ? ବୋଷଙ୍କ ନିକଟକୁ ଏକ ପତ୍ରରେ ନେହରୁ ତାହା ସ୍ପଷ୍ଟ କରିଥିଲେ । ସେ ଲେଖିଥିଲେ– ଦୁଇଟି କାରଣରୁ ସେ ବିରୋଧ କରିଥିଲେ । ପ୍ରଥମ ହେଉଛି ଯେ ବର୍ତ୍ତମାନର ପରିସ୍ଥିତିରେ ଗାନ୍ଧିଜୀଙ୍କ ସହିତ ସଂପର୍କ ଛିନ୍ନ କରିବା ମସ୍ତବଡ଼ ଭୁଲ୍ ହେବ । ଦ୍ୱିତୀୟ ହେଲା ଯେ ଆନ୍ତର୍ଜାତିକ ପରିସ୍ଥିତିର ବିଚାରରେ ନେହରୁଙ୍କ ସହିତ ବୋଷଙ୍କ ମତପାର୍ଥକ୍ୟ, ବୋଷ ଜର୍ମାନୀ ଓ ଇଟାଲୀର ନିନ୍ଦା ଚାହାନ୍ତି ନାହିଁ ।

ତ୍ରିପୁରୀ କଂଗ୍ରେସ ଇତିହାସକୁ ଏକ ନୂଆ ମୋଡ଼ ଦେଇଥିଲା ।

## (୧୮)

## କଟକରେ ସୁଭାଷ ବୋଷ

ଯେଉଁପରି ସୁଭାଷବାବୁଙ୍କୁ କଂଗ୍ରେସ ସଭାପତି ପଦରୁ ଅନ୍ତର କରାଗଲା, ତାହା ଭାରତୀୟ ଯୁବପ୍ରାଣରେ ଘୋର ଅସନ୍ତୋଷ ସୃଷ୍ଟିକରିଥିଲା । ବହୁ ଜାତୀୟବାଦୀ ସଂବାଦପତ୍ର ମଧ୍ୟ ତା'ର ଘୋର ସମାଲୋଚନା କରିଥିଲେ । ବୋଷ ଚାହିଁଥିଲେ ସଭାପତି ପଦରୁ ଇସ୍ତଫା ନ ଦେଇ ପରିସ୍ଥିତିର ମୁକାବିଲା କରିପାରିଥାନ୍ତେ, କିନ୍ତୁ ସେ ତାହା କଲେନାହିଁ, ବୃହତ୍ତର ଜାତୀୟ ସ୍ୱାର୍ଥର ବିଚାରରେ । କଂଗ୍ରେସର ବିଭାଜନ ସେ ଚାହିଁନଥିଲେ ।

କଂଗ୍ରେସର ଯେଉଁ ବାମପନ୍ଥୀ ଗୋଷ୍ଠୀର ସମର୍ଥନରେ ସେ ସଭାପତି ହୋଇଥିଲେ, ସେ ଶକ୍ତିର ଦୁର୍ବଳତା ଯୋଗୁ ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ପୁନଶ୍ଚ, ବାମପନ୍ଥୀଗୋଷ୍ଠୀଗୁଡ଼ିକୁ ସଂଗଠିତ ଓ ସବଳ କରିବା ଉଦ୍ଦେଶ୍ୟରେ ସେ 'ଫରଓ୍ୱାର୍ଡ଼ ବ୍ଲକ୍' ଗଠନକଲେ । କଂଗ୍ରେସର ବିରୋଧୀ ରୂପେ'ଫରଓ୍ୱାଡ଼୍ ବ୍ଲକ'ଗଠିତ ହୋଇଥିଲା ବୋଲି ଧାରଣା ଭୁଲ୍– ଏହା କଂଗ୍ରେସର ଏକ ଅଙ୍ଗରୂପେ ଗଠିତ ହୋଇଥିଲା । ୧୯୩୯ ମଇ ମାସରେ 'ଫରଓ୍ୱାର୍ଡ଼ ବ୍ଲକ'ଗଠନ ଘୋଷିତ ହେଲା । ସେହି ବର୍ଷ ଅଗଷ୍ଟ ମାସରେ କଟକଠାରେ ଗୋଟିଏ ପ୍ରାଦେଶିକ ଯୁବ-ସମ୍ମିଳନୀ ଅନୁଷ୍ଠିତ ହେଲା । ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ୍ ଥିଲେ ଯଦୁମଣି ମଙ୍ଗରାଜ । ସମ୍ମିଳନୀ ଅନୁଷ୍ଠିତ ହେଲା । ସମ୍ମିଳନୀକୁ ଉଦ୍‌ବୋଧନ ଦେବାପାଇଁ ଆମନ୍ତ୍ରିତ ହୋଇ ସୁଭାଷବାବୁ କଟକରେ ପହଞ୍ଚିଲେ । ସେଦିନ ସକାଳେ ତାଙ୍କ ସଂବର୍ଦ୍ଧନା ନିମନ୍ତେ କଟକ ରେଲଷ୍ଟେସନରେ ପ୍ରବଳ ଜନଗହଳି ହୋଇଥିଲା । ପ୍ରାଦେଶିକ କଂଗ୍ରେସ କମିଟିର

ସଭାପତି ନୀଳକଣ୍ଠ ଦାସଙ୍କ ସମେତ ବହୁ କଂଗ୍ରେସ କର୍ମୀ, ଯୁବକ ଓ ଜନସାଧାରଣ ଉପସ୍ଥିତ ଥିଲେ । 'ସୁଭାଷବାବୁ ଜିନ୍ଦାବାଦ' ଧ୍ୱନିରେ ବାୟୁମଣ୍ଡଳ ମୁଖରିତ ହେଲା । ହାତୀ ଉପରେ ବସାଇ ତାଙ୍କୁ ସହର ପରିକ୍ରମା କରାଯାଇଥିଲା । ସେଥିପାଇଁ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷ ନୀଳକଣ୍ଠ ଦାସଙ୍କ ଉପରେ ବିରକ୍ତ ହୋଇଥିଲେ ।

ସନ୍ଧ୍ୟାବେଳେ ମ୍ୟୁନିସିପାଲିଟି ପଡ଼ିଆରେ ହଜାର ହଜାର ଲୋକଙ୍କ ଜୟଧ୍ୱନି ଭିତରେ ସୁଭାଷବାବୁଙ୍କ ଜ୍ୱାଳାମୟୀ ଭାଷଣ ଏବେବି ମୋର ମନେଅଛି । ସ୍ୱାଧୀନତା ହାସଲ ପାଇଁ କି କାତରତା, ସେଥିପାଇଁ ନିଜର ପ୍ରତ୍ୟେକ ରକ୍ତବିନ୍ଦୁ ଦାନ ପାଇଁ କି ବ୍ୟାକୁଳତା ! ସେଇ ସଭାରେ ଫରୱାର୍ଡ଼ ବ୍ଲକ୍‌ର ଓଡ଼ିଶା ଶାଖା ଗଠିତ ହୋଇଥିଲା । ମୁଁ ସେତେବେଳକୁ କଲେଜର ଚତୁର୍ଥ ଶ୍ରେଣୀର ଛାତ୍ର । ପ୍ରସ୍ତାବ ସପକ୍ଷରେ ମୁଁ ଓ ମୋର ଅନ୍ୟ କେତେକ ଛାତ୍ରବନ୍ଧୁ ଭାଷଣ ଦେଇଥିଲୁ । ମୁଁ, ଅଶୋକ ଦାସ, ଗଙ୍ଗାଧର ମହାପାତ୍ର, ସୁରଜ୍‌ମଲ୍ଲ ସାହା, ବଳରାମ ମହାନ୍ତି, ମୋତିଲାଲ ତ୍ରିପାଠୀ ପ୍ରମୁଖ ଫରୱାର୍ଡ଼ ବ୍ଲକରେ ଯୋଗଦେଲୁ । ବିଧାନସଭା କଂଗ୍ରେସ ଦଳର ସଭ୍ୟ ଦିବାକର ପଟ୍ଟନାୟକ କେନ୍ଦ୍ର କାର୍ଯ୍ୟକାରୀ କମିଟିକୁ ମନୋନୀତ ହେଲେ ଓ ଅଶୋକ ଦାସ ସାଧାରଣ ସଂପାଦକ ହେଲେ ।

ତା'ର ସପ୍ତାହକ ପରେ କଟକରେ ଆଉ ଗୋଟିଏ ଯୁବ-ସମ୍ମିଳନୀ ଅନୁଷ୍ଠିତ ହେଲା । ଅଭ୍ୟର୍ଥନା ସମିତିର ସଭାପତି ଥିଲେ ରାମକୃଷ୍ଣ ପତି । ନିମନ୍ତ୍ରିତ ହୋଇ ଆସିଥିଲେ ସମାଜବାଦୀ ଦଳର ନେତା ଜୟପ୍ରକାଶ ନାରାୟଣ ଓ ବିଶିଷ୍ଟ କୃଷକ-ନେତା ସ୍ୱାମୀ ସହଜାନନ୍ଦ ସରସ୍ୱତୀ । ଏହି ସମୟରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଦୁଇଟି ପ୍ରସ୍ତାବ ଗ୍ରହଣ କଲେ— ଗୋଟିଏ ହେଲା ଯେ କାର୍ଯ୍ୟକାରୀ କମିଟିର ବିନା ଅନୁମୋଦନରେ କୌଣସି ପ୍ରାଦେଶିକ କଂଗ୍ରେସ କମିଟି ବା କଂଗ୍ରେସ ଲୋକ ସତ୍ୟାଗ୍ରହ କରିପାରିବେ ନାହିଁ ଓ ଦ୍ୱିତୀୟରେ ପ୍ରାଦେଶିକ କଂଗ୍ରେସ କମିଟିର କ୍ଷମତା-ପରିସରକୁ ସଂକୁଚିତ କରାଯାଇଥିଲା । ସୁଭାଷବାବୁ ଏପରି ନିଷ୍ପତ୍ତିର ପ୍ରତିବାଦ କରିବାରୁ ତାଙ୍କୁ ତିନିବର୍ଷ ପାଇଁ କଂଗ୍ରେସରୁ ସସ୍‌ପେଣ୍ଡ କରିବା ସଙ୍ଗେ ସଙ୍ଗେ ବଙ୍ଗ ପ୍ରାଦେଶିକ କଂଗ୍ରେସ କମିଟିରୁ ମଧ୍ୟ ବହିଷ୍କାର କରାଗଲା ବୋଲି ସଂବାଦ ପି.ଟି.ଆଇ. ସଂବାଦ ସଂସ୍ଥାର ପ୍ରତିନିଧି ଏନ୍.ଆର୍. ସ୍ୱାମୀ ସଭାସ୍ଥଳିରେ ପହଞ୍ଚି ଜଣାଇବା ମାତ୍ରକେ ଜୟପ୍ରକାଶ ନାରାୟଣ ସ୍ତବ୍ଧ ହୋଇଗଲେ ଓ ସ୍ୱାମୀ ସହଜାନନ୍ଦଙ୍କ କ୍ରୋଧ ପ୍ରକାଶ ପାଇଲା । କଂଗ୍ରେସ ସଭାପତି ସଂଗଠନରୁ ବିତାଡ଼ିତ— ରାଜନୀତିକ ଚକ୍ରାନ୍ତର ଆଉ ଏକ ପରିପ୍ରକାଶ ।

## (୧୯)

## ବିଶ୍ୱଯୁଦ୍ଧ ଆରମ୍ଭ

ବୋଷଙ୍କ ରାଜନୀତିକ ଗଣନା ଠିକ୍ ବୋଲି ପ୍ରତିପାଦିତ ହେଲା । ୧୯୩୯ ସେପ୍ଟେମ୍ବର ପହିଲାରେ ଜର୍ମାନୀ ପୋଲାଣ୍ଡ ଉପରେ ଆକ୍ରମଣ କଲା । ସେପ୍ଟେମ୍ବର ୩ ତାରିଖରେ ଇଂରେଜ ସରକାର ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । କେନ୍ଦ୍ର ବ୍ୟବସ୍ଥା ସଭା ବା କୌଣସି ରାଜନୀତିକ ଦଳ ସହିତ ବିନା ଆଲୋଚନାରେ, ଭାରତ ବ୍ରିଟିଶ ସରକାରଙ୍କ ସପକ୍ଷରେ ଯୁଦ୍ଧ କରିବ ବୋଲି ବଡ଼ଲାଟ ଲିନ୍‌ଲିଥ୍‌ଗୋ ଘୋଷଣା କଲେ । ଭାରତରକ୍ଷା ଅର୍ଡ଼ିନାନ୍‌ସ ଘୋଷିତହେଲା । ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ କରିବାପାଇଁ ଭାରତୀୟ ସୈନ୍ୟଙ୍କୁ ବିଭିନ୍ନ ରଣକ୍ଷେତ୍ରକୁ ପଠାଗଲା । ବ୍ରିଟିଶ ସରକାରଙ୍କ ଯୁଦ୍ଧଉଦ୍ୟମରେ ସାହାଯ୍ୟ କରିବାକୁ ଗଡ଼ଜାତର ରାଜାମାନେ ପ୍ରତିଶ୍ରୁତି ଦେଲେ ।

କଂଗ୍ରେସ ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ଅନୁଯାୟୀ ଶାସନ ଚାଲିବ ବୋଲି ପ୍ରତିଶ୍ରୁତି ଆଉ ରହିଲା ନାହିଁ । ପ୍ରତ୍ୟେକ କଥାରେ ଲାଟ ଓ ମନ୍ତ୍ରିମଣ୍ଡଳ ମଧ୍ୟରେ ବିବାଦ ଚାଲିଲା । ଫଳରେ କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଲେ । କଂଗ୍ରେସ ମନ୍ତ୍ରିମଣ୍ଡଳର ଇସ୍ତଫା ଦିବସକୁ 'ମୁକ୍ତି-ଯୁଦ୍ଧ' ରୂପେ ପାଳନ କରିବାପାଇଁ ଜିନ୍ନା ସାହେବଙ୍କ ଆହ୍ୱାନର କୌଣସି ପ୍ରତିକ୍ରିୟା ପ୍ରକାଶ ପାଇଲା ନାହିଁ । ଦେଶସାରା ନିରାଶାର ବାତ୍ୟା ବୋହିଗଲା ।

## (୨୦)

## ଗଭର୍ଣ୍ଣର ଓ ପ୍ରଧାନମନ୍ତ୍ରୀ ବିବାଦ

୧୯୩୫ ମସିହା ଶାସନ-ଖସଡ଼ା ଅନୁଯାୟୀ ପ୍ରାଦେଶିକ ବ୍ୟବସ୍ଥାସଭା ନିର୍ବାଚନରେ ଆଠଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଏହି ମନ୍ତ୍ରିମଣ୍ଡଳଗୁଡ଼ିକୁ ନିର୍ଦ୍ଦେଶ ଦେବା ସଂଗେ ସଂଗେ ସେମାନଙ୍କ କାର୍ଯ୍ୟକଳାପ ତଦାରଖ କରିବାପାଇଁ ଗୋଟିଏ ପାର୍ଲିଆମେଣ୍ଟାରୀ ବୋର୍ଡ଼ ଗଠିତ ହୋଇଥିଲା । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏହାର ସଭାପତି ଏବଂ ମୌଲାନା ଆଜାଦ ଓ ବାବୁ ରାଜେନ୍ଦ୍ରପ୍ରସାଦ ସଭ୍ୟ ଥିଲେ । ଏହି ସଭାପତି ପଦ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱକୁ ଦୃଢ଼କରିଦେଲା । କଂଗ୍ରେସ ସଭାପତିଙ୍କଠାରୁ ସେ ଅଧିକ କ୍ଷମତାଶାଳୀ ହୋଇଗଲେ

ବୋଲି କହିଲେ କିଛି ଭୁଲ୍ ହେବନାହିଁ । ବିହାରରେ ସର୍ବୋଚ୍ଚ କଂଗ୍ରେସ ନେତା ଥିଲେ ଡକ୍ଟର ମାହମୁଦ୍ ଓ ବଂବେରେ ନରିମାନ୍ । ମୌଲାନା ଆଜାଦଙ୍କ ମତରେ ଏହି ଦୁଇଜଣ ଉପରୋକ୍ତ ଦୁଇ ପ୍ରଦେଶର ପ୍ରଧାନମନ୍ତ୍ରୀ ହେବା କଥା । ନରିମାନ୍ ପାର୍ଶୀ ସଂପ୍ରଦାୟର ଲୋକ କିନ୍ତୁ ବଂବେ ବିଧାନସଭାର ଅଧିକାଂଶ ସଭ୍ୟ ହିନ୍ଦୁ । ସୁତରାଂ ନରିମାନ୍‌ଙ୍କ ଦାବି ଉପେକ୍ଷିତ ହେଲା ଓ ବି.ଜେ. ଖେର୍ ବମ୍ବେ କଂଗ୍ରେସ ଦଳର ସଭାପତି ରୂପେ ନିର୍ବାଚିତ ହୋଇ ପ୍ରଧାନମନ୍ତ୍ରୀ ହେଲେ । ଏହା ସର୍ଦ୍ଦାର ପଟେଲଙ୍କ ଚକ୍ରାନ୍ତ ବୋଲି ନରିମାନ୍‌ଙ୍କ ଅଭିଯୋଗକୁ ଗାଂଧିଜୀ ଜଣେ ଜଜ୍‌ଙ୍କ ସହାୟତାରେ ବିଚାରକରି ସର୍ଦ୍ଦାର ପଟେଲଙ୍କୁ ଦୋଷମୁକ୍ତ କରିଥିଲେ ଓ ନରିମାନ୍ କଂଗ୍ରେସରୁ ବହିଷ୍କୃତ ହୋଇଥିଲେ । ସେହିପରି ବିହାରରେ ମଧ୍ୟ ଡକ୍ଟର ମାହମୁଦ୍‌ଙ୍କ ଦାବିକୁ ଉପେକ୍ଷା କରାଯାଇ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ ଶ୍ରୀକୃଷ୍ଣ ସିଂହଙ୍କୁ ଅଣାଯାଇ ବିହାର କଂଗ୍ରେସ ଦଳର ନେତା ଓ ପ୍ରଧାନମନ୍ତ୍ରୀ କରାଗଲା । ଏହା ବାବୁ ରାଜେନ୍ଦ୍ରପ୍ରସାଦଙ୍କ ଯୋଗୁ ହେଲା ବୋଲି ଅଭିଯୋଗ ହୋଇଥିଲା । ସାଂପ୍ରଦାୟିକ ବିଚାରରୁ କଂଗ୍ରେସ ମୁକ୍ତ ହୋଇନାହିଁ ବୋଲି ଏତଦ୍ୱାରା ପ୍ରମାଣିତ ହେଲା ବୋଲି ମୌଲାନା ଆଜାଦ୍ ତାଙ୍କ ଲିଖିତ 'India Wins Freedom' ପୁସ୍ତକରେ ଲେଖିଛନ୍ତି ।

ସେତେବେଳଯାଏ ମୁସ୍‌ଲିମ୍ ଲିଗ୍‌ର ଦେଶରେ କୌଣସି ପ୍ରତିପତ୍ତି ନଥିଲା ବୋଲି ପ୍ରଧାନ ପ୍ରମାଣ ହେଉଛି ଯେ ଏହା କୌଣସି ପ୍ରଦେଶରେ ମନ୍ତ୍ରିମଣ୍ଡଳ ଗଢ଼ିବାରେ ସମର୍ଥ ହୋଇନଥିଲା । ପଞ୍ଜାବରେ ସାର୍ ସିକନ୍ଦର ହାୟତ୍ ଖାଁଙ୍କ ନେତୃତ୍ୱରେ 'ହିନ୍ଦୁ-ମୁସ୍‌ଲିମ୍-ଶିଖ୍' ସଭ୍ୟଙ୍କ 'ଇଉନିୟନିଷ୍ଟ ଦଳ'ର ମନ୍ତ୍ରିମଣ୍ଡଳ, ବଙ୍ଗରେ ଫଜଲୁଲ୍ ହକ୍‌ଙ୍କ ନେତୃତ୍ୱରେ 'କୃଷକ ପ୍ରଜା ପାର୍ଟି'ର ମନ୍ତ୍ରିମଣ୍ଡଳ ଓ ସିଂଧରେ ମୁସ୍‌ଲିମ୍ ଲିଗ୍‌କୁ ବାଦ୍‌ଦେଇ ହିନ୍ଦୁ-ମୁସଲମାନ ସଭ୍ୟଙ୍କ ମିଳିତ ମନ୍ତ୍ରିମଣ୍ଡଳ ଆଲ୍ଲାବକ୍ସଙ୍କ ନେତୃତ୍ୱରେ ଗଠିତ ହୋଇଥିଲା । ସୀମାନ୍ତ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ହୋଇଥିଲା । କେବଳ ବମ୍ବେ ଓ ଉତ୍ତରପ୍ରଦେଶରେ କେତେକ ମୁସଲିମ୍ ଲିଗ୍‌ର ସଭ୍ୟ ନିର୍ବାଚିତ ହୋଇଥିଲେ । ଜାମିୟାତ୍-ଉଲେମା-ଆଇ-ହିନ୍ଦ୍‌ର ସହଯୋଗ ଯୋଗୁ ଉତ୍ତରପ୍ରଦେଶରେ ଲିଗ୍‌ର ଅଧିକ ବିଜୟ ହୋଇଥିଲା । ଚଉଧୁରୀ ଖଲ୍ଲିକୁଜାମନ୍ ଏବଂ ନବାବ ଇସ୍‌ମାଇଲ ଖାଁ ଲିଗ୍‌ଦଳର ନେତା ଥିଲେ । ସେଠାରେ ଲିଗ୍ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ସମର୍ଥନ କରିବାକୁ ରାଜିଥିଲା ଏବଂ ମନ୍ତ୍ରିମଣ୍ଡଳରେ ସେମାନଙ୍କୁ ଦୁଇଟି ସ୍ଥାନ ଦିଆଯାଉ ବୋଲି ମୌଲାନା ଆଜାଦ୍ ପ୍ରସ୍ତାବ ଦେଇଥିଲେ, କିନ୍ତୁ ଗୋଟିଏ ସ୍ଥାନରୁ ଅଧିକ ଦିଆଯିବ ନାହିଁ ବୋଲି ପଣ୍ଡିତ ନେହରୁଙ୍କ ନିଷ୍ପତ୍ତିରେ ଅସନ୍ତୁଷ୍ଟ ହୋଇ ଲିଗ୍ ସମର୍ଥନ ନ ଦେବାକୁ ସ୍ଥିର କଲା । ମୁସଲିମ୍ ଲିଗ୍‌ର ସମର୍ଥନ ଗୃହୀତ ହୋଇଥିଲେ ଉତ୍ତରପ୍ରଦେଶରେ ଲିଗ୍‌ର ଆଉ ସତ୍ତା ରହିନଥାନ୍ତା ଏବଂ ପଣ୍ଡିତ ନେହରୁଙ୍କ ନିଷ୍ପତ୍ତି ମସ୍ତବଡ଼ ଭୁଲ୍ ବୋଲି ମୌଲାନା ଆଜାଦ୍ ତାଙ୍କ ଲିଖିତ ପୁସ୍ତକରେ ମତପ୍ରକାଶ କରିଛନ୍ତି ।

ଜମିଦାରୀ-ଉଚ୍ଛେଦ, ଜମିଜମା ଆଇନ ସଂସ୍କାର, ପ୍ରାଥମିକ ଓ ଗଣଶିକ୍ଷାର ପ୍ରସାର, ଅରଟ ଓ ଖଦଡ଼ ପ୍ରସାର ପ୍ରଭୃତି ବହୁତ ଜନମଙ୍ଗଳ କାର୍ଯ୍ୟ କଂଗ୍ରେସ ସରକାରଙ୍କ ଅମଳରେ ହୋଇଥିଲା । ଓଡ଼ିଶା ସମାଜବାଦୀ ଦଳ ନେତୃତ୍ୱରେ କୃଷକ ଆନ୍ଦୋଳନ ଜୋର୍‌ସୋର୍‌ରେ ଚାଲିଥିଲା । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ ଓ ଫନି ପାଲ ପ୍ରଭୃତିଙ୍କ ନିର୍ଦ୍ଦେଶନାରେ ଏହା ପରିଚାଳିତ ହେଉଥିଲା । କେତେକ ବିଷୟରେ ଲାଟସାହେବଙ୍କ ସହିତ ପ୍ରଧାନମନ୍ତ୍ରୀଙ୍କ ମତଭେଦ ଓ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ଦୃଢ଼ତା ସମଗ୍ର ଦେଶରେ ଚହଳ ସୃଷ୍ଟି କରିଥିଲା । ଲାଟ୍ ହବାକ୍ ସାହେବ ୪ମାସ ଛୁଟିରେ ଯିବାକୁ ଚାହିଁଲେ । ତାଙ୍କ ଅନୁପସ୍ଥିତିରେ କମିସନ୍‌ର ଡେନ୍ ସାହେବ ଲାଟ୍ ପଦବୀରେ ରହିବେ ବୋଲି ସରକାରୀ ନିଷ୍ପତ୍ତିକୁ ଗ୍ରହଣ କରିବାକୁ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ରାଜି ହେଲେ ନାହିଁ । ଜଣେ ଅଧସ୍ତନ କର୍ମଚାରୀଙ୍କୁ ଲାଟ୍ ରୂପେ ଗ୍ରହଣ କରିବାକୁ ସେ ରାଜି ନୁହନ୍ତି ବୋଲି ଘୋଷଣା କରି ଇସ୍ତଫା-ଧମକ ଦେଲେ । ଶେଷରେ ସରକାର ମୁଣ୍ଡ ନୁଆଁଇଲେ, ହବାକ୍ ସାହେବ ଆଉ ଛୁଟିରେ ଗଲେ ନାହିଁ । ସେହିପରି ଅରଟ ଓ ଖଦଡ଼ ପ୍ରସାର ପାଇଁ ବଜେଟ୍ ବ୍ୟବସ୍ଥାକୁ ଲାଟସାହେବ ବିରୋଧ କରିଥିଲେ ମଧ ଶେଷରେ ଗ୍ରହଣ କରିଥିଲେ । ଗଡ଼ଜାତ ପ୍ରଜା-ଆନ୍ଦୋଳନ ସମୟରେ ତା'ର ଦମନ ନିମନ୍ତେ ଓଡ଼ିଶାରୁ ପୁଲିସ୍ ବାହିନୀ ପଠାଇବା ପାଇଁ ଲାଟ୍‌ଙ୍କ ଅନୁରୋଧକୁ ବିଶ୍ୱନାଥବାବୁ ପ୍ରତ୍ୟାଖ୍ୟାନ କରିଥିଲେ । 'କିଏ ସରକାର' ବୋଲି ପ୍ରଶ୍ନ ଉଠିଲା । ଲାଟ୍‌ସାହେବ କହିଲେ ଯେ ସେ 'ସରକାର' । ବିଶ୍ୱନାଥବାବୁ କହିଲେ 'ଆପଣ ଗଭର୍ଣ୍ଣର, ମୁଁ ସରକାର' । କଂଗ୍ରେସ ମନ୍ତ୍ରିମଣ୍ଡଳ ସମୟରେ ସଂଖ୍ୟାଲଘୁ ସଂପ୍ରଦାୟର ଉନ୍ନତି ନିମନ୍ତେ ବହୁବିଧ କାର୍ଯ୍ୟକ୍ରମ ଗୃହୀତ ହୋଇଥିଲା ।

## (୨୧)

## ସ୍ୱାଧୀନତା ଦିବସର ଶପଥ– ଜାନୁଆରୀ ୨୬, ୧୯୩୦

ଅନ୍ୟଦେଶର ଲୋକଙ୍କ ଭଳି, ନିଜ ପରିଶ୍ରମର ଫଳ ଉପଭୋଗ କରିବାର ଜନ୍ମଗତ ଅଧିକାର ଭାରତୀୟଙ୍କର ଅଛି ବୋଲି ଆମେ ବିଶ୍ୱାସ କରୁଛୁ । ଯଦି କୌଣସି ସରକାର ଲୋକଙ୍କୁ ସେ ଅଧିକାରରୁ ବଞ୍ଚିତ କରେ, ତେବେ ସେ ସରକାରକୁ ପରିବର୍ତ୍ତନ କରିବାର ଅଧିକାର ଆମର ମଧ୍ୟ ରହିଛି । ବ୍ରିଟିଶ ସରକାର କେବଳ ଆମର ସ୍ୱାଧୀନତା ଅପହରଣ କରିନାହିଁ, ତା ସଂଗେ ସଂଗେ ଆମର ଅର୍ଥନୈତିକ, ଆଧ୍ୟାତ୍ମିକ

ଓ ସାଂସ୍କୃତିକ ପରଂପରାକୁ ଧ୍ୱଂସ କରିଛି । ବ୍ରିଟିଶ-ସଂପର୍କ ଛିନ୍ନ କରି ପୂର୍ଣ୍ଣ ସ୍ୱରାଜ୍ୟ ହାସଲ କରିବା ଆମର ଲକ୍ଷ୍ୟ ।

ଭାରତର ଅର୍ଥନୀତି ଧ୍ୱଂସ ପାଇଛି । ଆମ ରୋଜଗାର ଅନୁପାତରେ ଖଜଣା ବେଶୀ, ଆମ ରୋଜଗାର ଦୈନିକ ୭ପଇସା । ସୂତାକଟାପରି ଗ୍ରାମ୍ୟ-ଶିଳ୍ପ ଧ୍ୱଂସ ପାଇଛି ଯାହା ଫଳରେ ବି ଚାଷୀ ବର୍ଷକେ ଚାରିମାସ ବେତନ ବେକାର ହୋଇ ବସୁଛି । ଅନ୍ୟାନ୍ୟ ଗ୍ରାମ୍ୟଶିଳ୍ପର ଅବସ୍ଥା ସମାନ । ଆମର ମୁଖ୍ୟ ଆମଦାନୀ ହେଉଛି ବ୍ରିଟିଶ ଉତ୍ପାଦିତ ଦ୍ରବ୍ୟ ।

ଲୋକଙ୍କୁ କୌଣସି ରାଜନୀତିକ କ୍ଷମତା ଦିଆଯାଇନାହିଁ । ସ୍ୱାଧୀନ ମତବ୍ୟକ୍ତ କରିବାର ଅଧିକାର ନାହିଁ । ବହୁ ଭାରତୀୟ ନିର୍ବାସନରେ ଅଛନ୍ତି । ଆମକୁ ନିରସ୍ତ୍ର କରାଯାଇଛି ଏବଂ ଆମ ପ୍ରତିବାଦ ରୁଦ୍ଧ କରିବା ପାଇଁ ରହିଛି ବିଦେଶୀ ସେନାନୀ ।

ଯେଉଁ ଶାସନ ଆମପାଇଁ ଏ ବିପତ୍ତି ସୃଷ୍ଟି କରିଛି, ସେ ଶାସନକୁ ଆଉ ବରଦାସ୍ତ କରିବା– ଈଶ୍ୱର ଓ ମାନବଜାତିର ବିରୁଦ୍ଧାଚରଣ ହେବ ବୋଲି ଆମର ମତ । ହିଂସାତ୍ମକ ପନ୍ଥା ଦ୍ୱାରା ସ୍ୱାଧୀନତା ହାସଲ କରିହେବ ନାହିଁ । ସୁତରାଂ ବ୍ରିଟିଶ ସରକାରଙ୍କ ସହିତ ସଂପୂର୍ଣ୍ଣ ଅସହଯୋଗନୀତି ଅବଲମ୍ବନ କରିବାକୁ ହେବ । ଟିକସଦେବା ମଧ୍ୟ ବନ୍ଦ କରିଦିଆଯିବ । କଂଗ୍ରେସ ନିର୍ଦ୍ଦେଶ ଅନୁଯାୟୀ ପୂର୍ଣ୍ଣ ସ୍ୱରାଜ୍ୟ ହାସଲପାଇଁ ଆମେ କାର୍ଯ୍ୟକରିବାକୁ ଶପଥ ନେଉଛୁ ।

## (୨୨)

## ରେଭେନ୍ସା କଲେଜ ଧର୍ମଘଟ

ଜାନୁଆରୀ ୨୬, ୧୯୪୦ ।

ସ୍ୱାଧୀନତା ଦିବସ । ଜାତୀୟ ପତାକା ତଳେ ସମବେତ ଗୋଟାଏ ଜାତି ନିଜ ରକ୍ତ ତିଳକ ପିନ୍ଧି ପୁଣି ଶପଥ ନେବ—ପଥନିର୍ଣ୍ଣୟ ହୋଇସାରିଛି, ତାର ବିଶ୍ରାମ ନାହିଁ, ଭ୍ରୂକ୍ଷେପ ନାହିଁ, ହୁଏତ ସେ ବିଜୟ ହାସଲ କରିବ ନଚେତ୍ ସେହି ଉଦ୍ୟମରେ ପ୍ରାଣବଳି ଦେଇ ଦେଶମାତୃକାକୁ ଗାଢ଼ ଆଲିଙ୍ଗନରେ ଶେଷ ଚୁମ୍ବନ ଦେଇଯିବ, ଯେଉଁ ମଶାଣି ଭୂଇଁରୁ ଜନ୍ମଲାଭ କରିବେ କାର୍ତ୍ତବୀର୍ଯ୍ୟ ବୀରପୁରୁଷଗଣ ।

ସମଗ୍ର ବିଶ୍ୱର ସ୍ୱାଧୀନତା ପାଇଁ ଯୁଦ୍ଧ ହେଉଛି ବୋଲି କୁହାଯାଉଛି– ତଥାପି ଭାରତ-ପରାଧୀନ ହୋଇ ରହିଛି । ସତେ ଯେମିତି ବିଶ୍ୱବାହାରେ ତାର ଅବସ୍ଥିତି । ପୁଣି ଦେଶର ଇଚ୍ଛା ବିରୁଦ୍ଧରେ, ଇଂରେଜ ଶାସକବର୍ଗ ଜବରଦସ୍ତି ଭାରତକୁ ଯୁଦ୍ଧରେ

ପୂରାଇ ଦେଇଛନ୍ତି । ପ୍ରତିବାଦ ସ୍ୱରୂପ ବିଭିନ୍ନ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଇଛନ୍ତି । ଶେଷ ସ୍ୱାଧୀନତା ସଂଗ୍ରାମ ପାଇଁ ଦେଶ ଅସ୍ଥିର ହୋଇଉଠିଛି । ଏହି ପରିପ୍ରେକ୍ଷିରେ 'ସ୍ୱାଧୀନତା ଦିବସ' ।

ସେତେବେଳେ ପାଟଣା ବିଶ୍ୱବିଦ୍ୟାଳୟର ଛାତ୍ର । ମୁଁ ପଶ୍ଚିମ ଛାତ୍ରାବାସରେ ଥାଏ । ସେହିବର୍ଷ ମୋର ବି.ଏ.ପରୀକ୍ଷା ଦେବା କଥା । ପରୀକ୍ଷା ହେବ ଠିକ୍ ମାସକ ପରେ– ଫେବୃଆରୀ ୨୬ ତାରିଖରେ ।

ସେତେବେଳେ ସମଗ୍ର ଦେଶରେ ଛାତ୍ରମାନଙ୍କର ଏକମାତ୍ର ଅନୁଷ୍ଠାନ ଥିଲା 'ଛାତ୍ର ଫେଡେରେସନ' । ଓଡ଼ିଶାରେ ସଂଗଠନ ଖୁବ୍ ଟାଣ ହୋଇଯାଇଥାଏ । ୧୯୩୯ରେ ମେଡ଼ିକାଲ ସ୍କୁଲ ଛାତ୍ରଙ୍କ ଦାବି ଉପରେ କଂଗ୍ରେସ ସରକାରଙ୍କ ବିରୁଦ୍ଧରେ ସତ୍ୟାଗ୍ରହ ଆନ୍ଦୋଳନରେ ଜୟୀ ହେବା ପରେ ଆମ ଭିତରେ ଥାଏ ନାହିଁନଥିବା ଏକତା ଓ ଦୃଢ଼ତା ।

କଲେଜ ଭିତରେ ଜାତୀୟ ପତାକା ଉଡ଼ାଇ ବିଧିବଦ୍ଧ ଭାବେ ସ୍ୱାଧୀନତା ଦିବସ ପାଳନ କରିବାପାଇଁ ମୁଁ ଓ ମୋର ସହପାଠୀ ନୀଳମଣି ରାଉତରାୟ ପ୍ରିନ୍ସିପାଲ ପରିଜା ସାହେବଙ୍କ ଅନୁମତି ମାଗିଲୁ । ନୀଳମଣି ପୂର୍ବ ଛାତ୍ରାବାସରେ ରହୁଥାଏ । ସେ କହିଲେ– ମୋତେ ଅନୁମତି ମାଗିଲେ ମୁଁ ଦେଇପାରିବିନାହିଁ– ମୋତେ ନ ପଚାରି ଯାହା ଭାବୁଛ କର ।

ଅନୁମତି ମାଗିବାର ପ୍ରୟୋଜନ ନଥିଲା । ଅନୁମତି ନ ମିଳିଲେ ମଧ୍ୟ ଆମେ କରିଥାନ୍ତୁ । ଦେଶର ସ୍ୱାଧୀନତା ସଂଗ୍ରାମ ସହିତ ଜଡ଼ିତ ଛାତ୍ରର ଭବିଷ୍ୟତ ଓ ଜୀବନର ସାର୍ଥକତା ପ୍ରବଳ ଉଦ୍ଦୀପନା ଭିତରେ ସ୍ୱାଧୀନତା ଦିବସ ପାଳିତ ହେଲା । କଲେଜରେ ଜାତୀୟ ପତାକା ଉଡ଼ିଲା । ପ୍ରତୀକ ଧର୍ମଘଟ କରି ଛାତ୍ରମାନେ ଟେନିସପଡ଼ିଆରେ ସଭା କଲେ । ପୁଣି ସନ୍ଧ୍ୟାରେ ଟାଉନ୍‌ହଲ୍‌କୁ ଶୋଭାଯାତ୍ରା ଓ ସେଠି ସଭା ।

ଫେବୃଆରୀ ୩ ତାରିଖ । ରେଭେନ୍‌ସା କଲେଜ ପୁରାତନ ଛାତ୍ର ସଂସଦର ବାର୍ଷିକ ଅଧିବେଶନରେ ମୁଖ୍ୟଅତିଥିରୂପେ ଶ୍ରୀମତୀ ସରୋଜିନୀ ନାଇଡୁ ଆସିଥାନ୍ତି । ରେଭେନ୍‌ସା କଲେଜ ଇଉନିୟନପକ୍ଷରୁ ଆମେ ତାଙ୍କୁ ସଂବର୍ଦ୍ଧନା ଜଣାଇଥିଲୁ । ତାର କିଛି ଦିନ ପୂର୍ବରୁ ବନମାଳୀ ପଟ୍ଟନାୟକ ଇଉନିୟନର ସଭାପତି ରୂପେ ନିର୍ବାଚିତ ହୋଇଥାଆନ୍ତି । ମୁଁ ଓ ସୁରଜମଲ୍ଲ ସାହା ଯଥାକ୍ରମେ ତାର ପ୍ରସ୍ତାବକ ଓ ସମର୍ଥକ ଥିଲୁ । ନୀଳମଣି ପସନ୍ଦ କରିନଥିଲା ସତ, କିନ୍ତୁ ସେଥିଯୋଗୁଁ ଆମ ଭିତରେ କୌଣସି ବିଭେଦ ସୃଷ୍ଟି ହୋଇନଥିଲା । ପୁଣି ସେହି ସଂଧ୍ୟାରେ ଆମେ ମୁଖ୍ୟ ଅତିଥିଙ୍କ ସମ୍ମାନାର୍ଥେ ଗୋଟିଏ ହାସ୍ୟରସପୂର୍ଣ୍ଣ ଏକାଙ୍କିକା ଅଭିନୟ କରିଥିଲୁ– ମୁଁ ନାୟକ ଓ ନାୟିକା ଭୂମିକାରେ ସୁନୀଲକାନ୍ତି ଘୋଷ । ଖୁବ୍ ଲୋକଭିଡ଼ ହୋଇଥିଲା । ପ୍ରଫେସର ଗୁରୁଚରଣ

ମହାନ୍ତି ପ୍ରଶଂସା କରୁ କରୁ ଆଶୀର୍ବାଦ ଦେଇ କହିଲେ– ଜୀବନ ରଙ୍ଗମଞ୍ଚରେ ତୁମର ସଫଳତା କାମନା କରୁଛି ।

ଶ୍ରୀମତି ସରୋଜିନୀ ଦେବୀଙ୍କର ତିନୋଟି ଭାଷଣ ମୁଁ ସେଦିନ ଶୁଣିଲି । 'ଭାରତର କୋକିଳ' ନାମରେ ସେ ପରିଚିତ ଥିଲେ । କୋକିଳ କଣ୍ଠରେ ପୁଣି ବିପ୍ଳବର ସ୍ୱର, ଅଗ୍ନିର ଝଙ୍କାର, ଆତ୍ମତ୍ୟାଗର ଆଗ୍ନେୟଗିରି ବିସ୍ଫୋରଣ । ଏମିତି ଶୁଣି ନ ଥିଲି କେବେ କି ଆଜିଯାଏ ଶୁଣିନି ।

ଫେବୃଆରୀ ୧୬ତାରିଖ, ଦିନ ପ୍ରାୟ ତିନିଟା ହେବ । କଲେଜ ବାରଣ୍ଡାରେ ପରିଜା ସାହେବଙ୍କ ସହିତ ଦେଖାହେଲା । ଆମ ପରିବାରର ସମସ୍ତଙ୍କୁ ସେ ଜାଣିଥିଲେ । ନନାଙ୍କ ସହିତ ତାଙ୍କର ଭଲ ସଂପର୍କ ଥିଲା । ପରୀକ୍ଷାପାଇଁ କିପରି ପ୍ରସ୍ତୁତି ହୋଇଛି ବୋଲି ପଚାରିଲେ । କିଛି ସମୟ କଥାବାର୍ତ୍ତା ପରେ ମୁଁ ହଷ୍ଟେଲକୁ ଫେରିଲି ।

ତାର ଘଣ୍ଟାକ ପର କଥା । ହଷ୍ଟେଲରେ ମୁଁ ପିଙ୍ଗପଙ୍ଗ ଖେଳୁଛି । ପ୍ରିନ୍ସପାଲଙ୍କ ଅଫିସରୁ ପିଅନ୍ ବୁକ୍‌ରେ ଚିଠି ପହଞ୍ଚିଲା । ପାଟଣା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍‌ର ନିଷ୍ପତ୍ତି ମୋତେ ଜଣାଇଦିଆଗଲା । ପ୍ରିନ୍ସପାଲଙ୍କ ବିନାନୁମତିରେ କଲେଜ ହତାଭିତରେ ଜାତୀୟ ପତାକା ଉଡ଼ାଇ ମୁଁ ମସ୍ତବଡ଼ ଦୋଷ କରିଛି, ସେଥିପାଇଁ ପ୍ରିନ୍ସପାଲଙ୍କ ସନ୍ତୋଷଜନକ ହେଲାଭଳି କ୍ଷମା ନ ମାଗିଲେ ଓ ଟ୨୫.୦୦ ଜୋରିମାନା ନଦେଲେ, ଆସନ୍ତା ବି.ଏ. ପରୀକ୍ଷା ଦେଇପାରିବି ନାହିଁ । ପିଅନ୍‌ବୁକ୍‌ରେ ନୀଳମଣିର ନାଁ ବି ଦେଖିଲି । ବୁଝିବାକୁ ବାକୀ ରହିଲାନାହିଁ ।

ପରିଜା ସାହେବଙ୍କ ସହିତ ଘଣ୍ଟାକ ତଳେ ଦେଖାହୋଇଥିଲା ଅଥଚ ସେ କିଛି କହିଲେ ନାହିଁ । ଅବାକ୍ ଲାଗିଲା । ନୀଳମଣି ସହିତ କଥାବାର୍ତ୍ତା କରିବାପାଇଁ ମୁଁ ପୂର୍ବ ଛାତ୍ରାବାସ ଆଡ଼େ ଧାଇଁଲାବେଳକୁ ନୀଳମଣି ଏ ପଟକୁ ଦୌଡ଼ିଛି । ଲାଇବ୍ରେରୀ ପାଖରେ ଦେଖାହେଲା । ନିଷ୍ପତ୍ତି ନେବାକୁ ସମୟ ଲାଗିଲା ନାହିଁ । ଆମେ ଆମର କର୍ତ୍ତବ୍ୟ କରିଛୁ, କୌଣସି ଦୋଷ କରିନୁ, ଆମକୁ ଦଣ୍ଡ ଦେବାର ଅଧିକାର କାହାରି ନାହିଁ, କ୍ଷମା ମାଗିବା ବା ଜୋରିମାନା ଦେବାର ପ୍ରଶ୍ନ ଉଠୁନାହିଁ ।

ନିଷ୍ପତ୍ତି ପରେ ମନଟା ହାଲୁକା ହୋଇଗଲା । ସିନେମା ଦେଖି ଚାଲିଗଲି ।

ସିନେମାରୁ ଫେରିଲାବେଳକୁ ଟେନିସ୍‌କୋଟ କଂପୁଛି । ରାମକୃଷ୍ଣ ପତି, ବିଶ୍ୱନାଥ ପଶାୟତ, ବୈଦ୍ୟନାଥ ରଥ, ଅନନ୍ତ ପଟ୍ଟନାୟକ, ସଚ୍ଚି ରାଉତରାୟ, ଅଶୋକ ଦାସ, ଗଙ୍ଗାଧର ମହାପାତ୍ର, ମନମୋହନ ମିଶ୍ର, ସୁରଜମଲ୍ଲ ସାହା, ବିଜୟଚନ୍ଦ୍ର ଦାସ, ବନମାଳୀ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି ଓ ରାମଚନ୍ଦ୍ର ମିଶ୍ର ପ୍ରଭୃତି ବହୁ ସାଥୀ ପହଞ୍ଚିଗଲେଣି । ସେମାନଙ୍କ ମଧ୍ୟରୁ କେତେକ ସେତେବେଳକୁ କଲେଜ ଛାଡ଼ି ସାରିଥିଲେ, କିନ୍ତୁ ଛାତ୍ର ଓ ଯୁବ ଆନ୍ଦୋଳନ ସହିତ ଘନିଷ୍ଠଭାବେ ସଂପୃକ୍ତଥିଲେ ।

ସମସ୍ତେ ଉତ୍ତ୍ୟକ୍ତ । ଏ ଆଦେଶନାମାର କ'ଣ କିଛି ଦର୍କାର ଥିଲା ? ପତାକା ଓଜନରେ କଲେଜ ଛାତ କଣ ଭୁଶୁଡ଼ି ପଡ଼ିଲା ? କେତେକ ଛାତ୍ରଙ୍କ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଓ ସଭାରେ ଏତେ କୋକୁଆ ଭୟ । ତୁମେ ବିଶ୍ୱବିଦ୍ୟାଳୟ– ଆମକୁ ଗଢ଼ିବା ଦାୟିତ୍ୱ ତୁମ ହାତରେ । ପିଠି ଥାପଡ଼େଇ ଆମକୁ ସାବାସ ଦେବା କଥା, ଯଦି ସେଥିପାଇଁ ସାହସ ନାହିଁ, ତୁନି ରହିଥାନ୍ତ, ଘଟଣାକୁ ନଜରକୁ ନନେଇ ବୁଦ୍ଧିମତ୍ତାର ପରିଚୟ ଦେଇଥାନ୍ତ । ହାୟରେ ଦୁର୍ଭାଗା ଦେଶ ! ବିଶ୍ୱବିଦ୍ୟାଳୟ ମଧ ରାଜସ୍ତୁତି-ଗାନରେ ବ୍ୟସ୍ତ– ଯାହାର ଭାଇସ୍-ଚ୍ୟାନସେଲର ଭାରତର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ ଡକ୍ଟର ସଚ୍ଚିଦାନନ୍ଦ ସିହ୍ନା । ସାର୍ଟିଫିକେଟ୍ ଦସ୍ତଖତ କଲାବେଳେ ସେ ପରକଲମ ବ୍ୟବହାର କରୁଥିଲେ । କଲମକୁ ଖୁବ୍ ମାଡ଼ି ଓ ଲମ୍ୱେଇ ସେ ଲେଖନ୍ତି । ଗୋଟେ ଦସ୍ତଖତରେ ଗୋଟେ ପରକଲମ ଭାଙ୍ଗିଯାଏ । ସେଥିପାଇଁ ଟେବୁଲ ଉପରେ ଯେତିକି ସାର୍ଟିଫିକେଟ୍‌କୁ ସେତିକି କଲମ ସଜାହୋଇ ଥୁଆହୋଇଥାଏ । ଯାହାର ଗୋଟେ ଦସ୍ତଖତରେ ଗୋଟେ କଲମ ଭାଙ୍ଗିଯାଏ, ସେ ପୁଣି ଏମିତି ହେଲେ କେମିତି ?

ଆମ କୋଠା ଉପରେ ଆମ ପତାକା ଆମେ ଉଡ଼ାଇବୁ– ବାଧା ଦେବାର ଅଧିକାର ତୁମର ନାହିଁ । ତୁମର ବାଧା ଅନ୍ୟାୟ । ଅନ୍ୟାୟ କରିବା ଯେତିକି ପାପ, ଅନ୍ୟାୟକୁ ପ୍ରଶ୍ରୟ ଦେବା ତାଠାରୁ କିଛି ଊଣା ନୁହେଁ । ଆମେ ମାନିବୁ ନାହିଁ । ସମସ୍ୱରରେ ପ୍ରତିବାଦ ଜଣାଉଛୁ ଅବିଳମ୍ୱେ ଆଦେଶନାମା ପ୍ରତ୍ୟାହାର କରି ନିଜ ଭୁଲକୁ ସୁଧାର ।

ତହିଁପରଦିନଠାରୁ ଧର୍ମଘଟ କରିବାକୁ ନିଷ୍ପତ୍ତି ହେଲା । ରାତିରେ ହଷ୍ଟେଲ ଛାତ୍ରମାନଙ୍କୁ କହିଦେଇହେବ ଓ ସକାଳେ କଲେଜ ସାମନା ଦୁଇଫାଟକ ଆଗରେ ଦୁଇ ଦଳ ଛିଡ଼ାହୋଇଯିବେ ନିଷ୍ପତ୍ତି ଜଣାଇବାପାଇଁ ।

ସଂପୂର୍ଣ୍ଣ ହରତାଳ । ଆମର ମଧ୍ୟ କିଛି ସଂଦେହ ନଥିଲା । କାହାକୁ କିଛି ବୁଝାଇବା ଦରକାର ପଡ଼ିଲା ନାହିଁ । ସମସ୍ତେ ବୁଝିଛନ୍ତି– ଆମ ବଞ୍ଚିରହିବାର ଅଧିକାର ଉପରେ ଏ ଅଯଥା ଆକ୍ରମଣ । ପ୍ରତିବାଦ କରିବାକୁ ହେବ, କେହି ନ ଶୁଣିଲେ ପ୍ରତିରୋଧର ପନ୍ଥା ଗ୍ରହଣ କରିବାକୁ ହେବ ।

ଦିନେ...ଦୁଇଦିନ...ତିନିଦିନ । କ୍ଳାସ ସବୁ ଖାଲିପଡ଼ିଛି । ସବୁ ଛାତ୍ର ଏକାଠି ହୋଇଛନ୍ତି ଟେନିସ୍‌କୋର୍ଟରେ, ସଭା ଚାଲିଛି, ମୁହଁରେ ଆତ୍ମସମ୍ମାନର ଦୀପ୍ତି । ସ୍ୱରରେ ବଜ୍ରର ଦୃଢ଼ତା ଓ ମନରେ ପୃଥିବୀ ଫଟା ସାହସ । କଲେଜର ଛାତ୍ରସମାଜ ନିଜକୁ ଏକ ଦୁର୍ଦ୍ଧର୍ଷ ସେନାବାହିନୀ ରୂପେ ସଂଗଠିତ କରିଛି– ସେ ମାଡ଼ିଚାଲିବ ଆଗକୁ । ତା'ର ପ୍ରତ୍ୟେକ ପଦକ୍ଷେପରେ ସୀମାବଦ୍ଧତାର ପ୍ରାଚୀର କରୁଣ ଚିତ୍କାର କରିଉଠିବ ।

ଶିକ୍ଷକମାନଙ୍କୁ କ୍ଲାସକୁ ନଛାଡ଼ିବାପାଇଁ କେତେକ ଛାତ୍ର ଦୁଆରମୁହଁରେ ଶୋଇରହନ୍ତି, ଶିକ୍ଷକମାନେ ଦୁଆରମୁହଁ ପର୍ଯ୍ୟନ୍ତ ଆସି ପୁଣି ଫେରିଯାନ୍ତି । କେବଳ ପ୍ରଫେସର ବିପିନ୍‌ବିହାରୀ ରାୟ ଆସିଲେ ନାହିଁ । ପରିଜାସାହେବ ତାଙ୍କୁ ସେଥିପାଇଁ କୈଫିୟତ ମାଗିଥିଲେ । ବିପିନବାବୁ ଉଦାରଚେତା, ନିର୍ଭୀକ ଓ ଛାତ୍ରସ୍ନେହୀ । ସେ ଉତ୍ତର ଦେଇଥିଲେ ଯେ ପିଲାଙ୍କ ପିଠିଉପରେ ଚଢ଼ି କ୍ଲାସକୁ ଯିବା ପ୍ରଶ୍ନ ନ ଉଠିବାବେଳେ ଦୁଆରମୁହଁ ପର୍ଯ୍ୟନ୍ତ ଯାଇ ପୁଣି ଫେରିଆସିବାର ପ୍ରହସନ କାହିଁକି ?

ଧର୍ମଘଟ ଚାଲୁରହିବାରେ କଲେଜ କର୍ତ୍ତୃପକ୍ଷ ଶଙ୍କିତ ହୋଇପଡ଼ିଲେ । କେତେକ ଅଭିଭାବକ ସମାଧାନ ଉଦ୍ୟମରେ ଲାଗିପଡ଼ିଲେ । ମୋ ନନା ଓ ପାଟଣା ହାଇକୋର୍ଟର ବିଚାରପତି ସୁବୋଧଚନ୍ଦ୍ର ଚାଟାର୍ଜୀ ସେମାନଙ୍କ ମଧ୍ୟରେ ଅନ୍ୟତମ । କ୍ଷମା ମାଗିଲେ ଜୋରିମାନା ଛାଡ଼ିଦିଆଯିବ ବା ଜୋରିମାନା ଦେଇଦେଲେ କ୍ଷମା ମାଗିବାକୁ ପଡ଼ିବ ନାହିଁ ବୋଲି ଆମକୁ କୁହାଗଲା । ଆମେ ରାଜିହେଲୁନାହିଁ— କ୍ଷମା ମାଗିବୁ ନାହିଁ ବା ଜୋରିମାନା ଦେବୁନାହିଁ; ଏ ଅନ୍ୟାୟ ଆଦେଶ ପ୍ରତ୍ୟାହୃତ ନ ହେବା ପର୍ଯ୍ୟନ୍ତ ଧର୍ମଘଟ ଚାଲୁରହିବ । ସମାଧାନ ଉଦ୍ୟମ ବିଫଳ ହେଲା । ନନା ପୁରୀ ଫେରିଗଲେ ।

ତା ପରେ, ସରକାର ଦୃଢ଼ ନୀତି ଅବଲମ୍ବନ କଲେ । ଧର୍ମଘଟ ଭାଙ୍ଗିବାପାଇଁ ସବୁ ଉଦ୍ୟମ ଆରମ୍ଭ ହୋଇଗଲା । ପ୍ରିନ୍‌ସପାଲଙ୍କ ବିନାନୁମତିରେ କ୍ରମାଗତ ତିନିଦିନ କ୍ଲାସରୁ ଅନୁପସ୍ଥିତ ରହିଥିବା ଅଭିଯୋଗରେ ସବୁ ଛାତ୍ରଙ୍କ 'ନାଁ' କାଟିଦିଆଗଲା । କଲେଜରେ ଆଉ ଛାତ୍ର ନାହାନ୍ତି, ଖାଲି ମାଳ ମାଳ ଶିକ୍ଷକ । ପୁଣି, ଆମେ ଆଉ ଛାତ୍ର ନୋହୁଁ— ଏହି ଯୁକ୍ତିରେ ଚବିଶଘଣ୍ଟା ମଧ୍ୟରେ ହଷ୍ଟେଲରୁ ବାହାରିଯିବାକୁ ଆଦେଶ ମିଳିଲା— ତା ନ ହେଲେ, 'କ୍ରିମିନାଲ-ଟ୍ରେସପାସ୍' ଅଭିଯୋଗରେ ଗିରଫ କରାଯିବ ବୋଲି ଧମକ ଦିଆହେଲା ।

ଧମକକୁ ଡରନାହିଁ, ହଷ୍ଟେଲ ଛାଡ଼ିବୁ ନାହିଁ । ତୁମ ଅନ୍ୟାୟ ଅତ୍ୟାଚାରରେ ପରିଣତ ହୋଇଛି । ଆମେ ଛାତ୍ର, ଆମ ଯୋଗୁ ଏ କଲେଜ, ତୁମେ ପ୍ରଫେସର ଦଳ ଓ ଏହି ବିଶ୍ୱବିଦ୍ୟାଳୟ । ଆମ ସ୍ଥିତିକୁ ତମେ ଅସ୍ୱୀକାର କଲେ, ତୁମ ସ୍ଥିତି ଆମେ ମାନିବୁନାହିଁ ।

ବିଜୁଳି, ପାଣିଯୋଗାଣ ବ୍ୟବସ୍ଥା କାଟିଦିଆଗଲା । ହଷ୍ଟେଲ ମେସ୍ ବନ୍ଦ କରିଦେବାକୁ ନିର୍ଦ୍ଦେଶ ଦିଆଗଲା । ଯେତିକି ମାଡ଼ ପଡ଼ିଲା, ତା ଆମକୁ ଭାଙ୍ଗିଦେବା ପରିବର୍ତ୍ତେ ଅଧିକ ଟାଣ କରିଦେଲା । ଅନ୍ଧାର ଆମକୁ ଭୟଭୀତ କରିପାରିଲା ନାହିଁ । କଲେଜ କଂପାଉଣ୍ଡ ଭିତରେ ସାରାରାତି ବଡ଼ ବଡ଼ ନିଆଁହୁଳା ଜଳି ରାସ୍ତାର ବିଜୁଳି ଆଲୁଅକୁ ଉପହାସ କଲା । ହାତରେ ନିଆଁହୁଳା ଧରି ଶୋଭାଯାତ୍ରା, ରାତିରେ ହୁଳା-ଆଲୁଅତଳେ ଟେନିସ୍-କୋର୍ଟରେ ସଭା । କଟକ ସହରରେ ନାହିଁନଥିବା ଉନ୍ମାଦନା ।

କେତେ ମାଗଣା ଖାଇବାକୁ ମିଳୁଛି, କେତେ ପାନ, ବିଡ଼ି, ସିଗାରେଟ୍– ନ ନେଲେ ଲୋକେ ଦୁଃଖିତ ହେଉଛନ୍ତି । ଏ ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଆମକୁ ଦେଇଗଲା ଅଭିନବ ପ୍ରେରଣା । ଏମିତି ଦିନେ ରାତିରେ ଟେନିସ୍‌କୋର୍ଟ ସଭାରେ ରେଭେନ୍‌ସାକଲେଜ 'ସାଧାରଣତନ୍ତ୍ର' ହେଲା ବୋଲି ଘୋଷଣା କରାଗଲା । ପରାଧୀନ ଭାରତରେ 'ସାଧାରଣତନ୍ତ୍ର' ରେଭେନ୍‌ସା କଲେଜ । ପୁଣି ୨୪ଘଣ୍ଟା ପରେ କଲେଜ ହତା ଭିତରେ ରହୁଥିବା ପ୍ରଫେସରମାନେ କଲେଜ ଭିତରେ ଯା'ଆସ କରି ପାରିବେ ନାହିଁ ବୋଲି ଆଦେଶ ଦିଆଗଲା । ଅକାଟ୍ୟ ଯୁକ୍ତି– ଆମ ଯୋଗୁ ତୁମେ, ଆମର ଏଠି ରହିବାର ଅଧିକାର ନାହିଁ, ତୁମର ଆସିବ କେଉଁଠୁ ? ତୁମେ ଆମକୁ ଅସ୍ୱୀକାର କରିଛ, ଆମେ ତୁମକୁ ଅସ୍ୱୀକାର କରିବୁ । ଆମର ତୁମ ବିରୁଦ୍ଧରେ ବ୍ୟକ୍ତିଗତଭାବେ କୌଣସି ଅଭିଯୋଗ ନାହିଁ, ଅଭିଯୋଗ ସଂସ୍ଥା ବିରୁଦ୍ଧରେ ଯାହାର ପ୍ରତିନିଧି ତୁମେ । ସେଥିପାଇଁ ତୁମକୁ ଏ ନୋଟିସ, ଆମକୁ ଭୁଲବୁଝିବ ନାହିଁ । ଏଣିକି ଏ ହତାଭିତରେ ଆମ ଶାସନ ଚାଲିବ, ଆମେ ଆଦେଶନାମା ଜାରୀ କରିବୁ ।

ପରିଜାସାହେବ ନିଜ କ୍ୟାଣ୍ଟନମେଣ୍ଟ ଘରକୁ ଚାଲିଗଲେ । ପ୍ରଫେସରମାନଙ୍କର କଲେଜ ହତାଭିତରେ ଯା'ଆସ ବନ୍ଦହୋଇଗଲା । ଅର୍ଥନୀତି ବିଭାଗର ମୁଖ୍ୟ ପ୍ରଫେସର ଭୈରବନାଥ ରୋହତ୍‌ଗୀ, ଅଭ୍ୟାସ ଦୋଷବଶତଃ, ଦିନେ ହଷ୍ଟେଲ ବାରଣ୍ଡାରେ ଯାଉଯାଉ ସୁରଜମଲ୍ଲ ସାହାଙ୍କ ହାବୁଡ଼ରେ ପଡ଼ିଗଲେ । ସେଇଠି ତାଙ୍କୁ ରହିଯିବାକୁ ହେଲା । ସାଧାରଣତନ୍ତ୍ରର ଆଦେଶ–ଅମାନ୍ୟକୁ ବରଦାସ୍ତ କରାଯାଇ ନ ପାରେ । ସୁରଜ ରାଗରେ ଚିତ୍କାରକରୁଥାଏ ଓ ନିଜ ଛାତିକୁ ପିଟିପକାଉଥାଏ । ଠିକ୍ ସେତିକିବେଳକୁ ମୁଁ ପହଞ୍ଚିଗଲି ମୁଁ ନଥିଲେ ସୁରଜକୁ ପୁଣି ଶାନ୍ତ କରିବ କିଏ ?

ହଠାତ୍ ଦିନେ ଅଶୋକ ଦାସ, ସଚ୍ଚିରାଉତରାୟ ପ୍ରଭୃତିଙ୍କୁ 'କ୍ରିମିନାଲ ଟ୍ରେସପାସ୍' ଅଭିଯୋଗରେ ଗିରଫ କରିନିଆହେଲା । ସେତେବେଳକୁ ସେମାନେ ଛାତ୍ର ନଥିଲେ, ସୁତରାଂ କଲେଜ ହତା ଭିତରେ ପ୍ରବେଶ କରିବାର ଅଧିକାର ତାଙ୍କର ନାହିଁ । ଏହି ଉଦ୍ଦେଶ୍ୟରେ କ'ଣ ଆଇନ ତିଆରି ହୋଇଥିଲା ? ଦୁଇଜଣ ଛାତ୍ରଙ୍କୁ ପରୀକ୍ଷାରୁ ବଂଚିତ କରିବାପାଇଁ ତୁମ ଅନ୍ୟାୟ ଆଦେଶ ବିରୁଦ୍ଧରେ ଆମେ ପ୍ରତିବାଦ କରିଥିଲୁ, ଆଦେଶ ଓ୍ୟାପଶ ନେଇଯିବାକୁ ଦାବି କରିଥିଲୁ, କିନ୍ତୁ ତୁମେ ତା କରିବା ବଦଳରେ ଆମ ଉପରେ ସବୁପ୍ରକାର ଅତ୍ୟାଚାର ଚଳାଇଛ । ତୁମେ ଆମକୁ ଭାଙ୍ଗିପାରିବ ନାହିଁ, ଆମେ ସବୁପ୍ରକାର ମୁକାବିଲା ପାଇଁ ପ୍ରସ୍ତୁତ । ବର୍ତ୍ତମାନ ବି ସମୟ ଅଛି, ତୁମ ଆଦେଶକୁ ପ୍ରତ୍ୟାହାର କରିନେଇ କଲେଜକୁ ଶାନ୍ତି ଫେରାଅ– ତା ନହେଲେ ଆମେ କେହି ଆଇ.ଏ. ବା ବି.ଏ. ପରୀକ୍ଷା ଦେବୁନାହିଁ ।

ଧର୍ମଘଟରୁ ଆରମ୍ଭହୋଇ ପରିସ୍ଥିତି ବିଶ୍ୱବିଦ୍ୟାଳୟ ପରୀକ୍ଷାବର୍ଜନରେ ପହଞ୍ଚିଲା । 'ପରୀକ୍ଷା ପ୍ରବେଶପତ୍ର ଦହନ' ନିଷ୍ପତ୍ତି ନିଆଗଲା । କଲେଜ ଅଫିସ୍ ସାମନା ଏକ ସ୍ୱତନ୍ତ୍ର ଉତ୍ସବରେ ପ୍ରତ୍ୟେକ ଛାତ୍ର ଜଳନ୍ତାନିଆଁରେ ନିଜ ପ୍ରବେଶପତ୍ର ପକାଇଦେଲେ । ଅଗ୍ନିର ଲେଲିହାନ୍ ଜିହ୍ୱାରେ ସତେ ଯେମିତି ପାଟଣା ବିଶ୍ୱବିଦ୍ୟାଳୟର ସୁନାମ ଓ ମହତ୍ତ୍ୱ ଜଳିପୋଡ଼ି ପାଉଁଶ ହୋଇଗଲା । ବାସ୍ତବିକ ଏକ ଉତ୍ସବ ସେ— କି ଉନ୍ମାଦନା, କି ଜୟଜୟକାର—ଆମେ ଛାତ୍ରସମାଜ, ଆମେ ଧ୍ୱଂସକାରୀ, ଆମେ ସୃଜନକାରୀ, ଆମେ ଏକ, ଅବିଚ୍ଛିନ୍ନ, ଅଭେଦ୍ୟ ।

ଫେବୃଆରୀ ୨୫ତାରିଖ । କଟକ ସହର ପୁଲିସ ଛାଉଣୀରେ ପରିଣତ ହୋଇଛି । ପେଶୱାରରୁ ସଶସ୍ତ୍ର ପୁଲିସବାହିନୀ ମଗାଯାଇଛି । ଆମେ ଖବର ପାଇଲୁ ଯେ ରାତିଅଧିଆ ହଷ୍ଟେଲକୁ ଘେରାଉକରି ସରକାରୀ କର୍ମଚାରୀଙ୍କ ପିଲାମାନଙ୍କୁ ଜବରଦସ୍ତି ପରୀକ୍ଷାଦେବାକୁ ବାଧ୍ୟକରାଯିବ । ସରକାରୀ ଉଦ୍ୟମକୁ ପଣ୍ଡ କରିବାପାଇଁ ସଂଧ୍ୟାସୁଦ୍ଧା ଦୁଇ ହଷ୍ଟେଲ ଖାଲିକରିଦେବାକୁ ଆମେ ନିଷ୍ପତ୍ତି କଲୁ । ସେତେବେଳେ ଓଡ଼ିଆବଜାରର ଜାନକୀନାଥ ଭବନରେ ପ୍ରାଦେଶିକ କଂଗ୍ରେସ କମିଟି ଅଫିସ ଥାଏ । ସମସ୍ତେ ସେଇଠିକୁ ଯିବୁ ବୋଲି ନିଷ୍ପତ୍ତି ହେଲା ।

ସେ ସଂଧ୍ୟା ମନରେ ଅଲିଭାଦାଗ ରଖିଯାଇଛି । କେତେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଚାକିରି ଚାଲିଯିବା ଭୟରେ ନିଜ ପିଲାଙ୍କୁ ବୁଝାଇସୁଝାଇ ସାଙ୍ଗରେ ଘରକୁ ନେଇଯିବାକୁ ଆସିଲେ, କିନ୍ତୁ କେହି ଜଣେହେଲେ ଛାତ୍ର ଗଲେନାହିଁ । ସେତେବେଳକୁ ସେମାନେ ବ୍ୟକ୍ତିଗତ ପ୍ରଶ୍ନର ବିଚାରର ଦୂରରେ, ବହୁ ଉପରେ । ଛାତ୍ରସମାଜ ଭିତରେ 'ମୁଁ ଆଉ ତୁମେ'ର ବିଭେଦ ନାହିଁ । ସଂଧ୍ୟା ହୋଇଆସୁଛି, ଜଣେଜଣେ କରି ଛାତ୍ର ନିଜ ବେଡ଼ିଂ କାନ୍ଧରେ ପକାଇ ଟେନିସ୍‌କୋର୍ଟରେ ଏକାଠି ହେଉଛନ୍ତି, ସେଇଠୁ ସମସ୍ତେ ଶୋଭାଯାତ୍ରାରେ ଜାନକୀନାଥ ଭବନ ଯିବେ । ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ, ଇତିହାସ ବିଭାଗର ମୁଖ୍ୟ ପ୍ରଫେସର ଘନଶ୍ୟାମ ଦାସ ଗେମସ୍‌ରୁମ୍‌ର ପିଙ୍ଗପଙ୍ଗ ଟେବୁଲ ଉପରେ ମୂକପରି ବସିଥାନ୍ତି । ଛାତ୍ରମାନେ ବିଦାୟ ନେଲାବେଳେ ତାଙ୍କ ଆଖିରୁ ଧାରଧାର ଲୁହ ବୋହିଯାଉଥାଏ ।

ସମସ୍ତେ ଚାଲିଗଲେଣି । ପଶ୍ଚିମ ଛାତ୍ରାବାସରେ ଏକା ପ୍ରଫୁଲ୍ଲ କୁମାର ପତି ଅଛନ୍ତି । ପ୍ରଫୁଲ୍ଲ ଜଣେ ମେଧାବୀ ଛାତ୍ର । ସମ୍ବଲପୁରରୁ ମାଟ୍ରିକୁଲେସନ୍ ବୃତ୍ତିପାଇ ଆସିଛି । ତହିଁପରଦିନ ଆଇ.ଏ.ପରୀକ୍ଷା ଦେବ । ନିଶ୍ଚୟ ବୃତ୍ତି ପାଇବ ବୋଲି ସମସ୍ତେ ଧରିନେଇଛନ୍ତି । ପ୍ରଫେସର ଘନଶ୍ୟାମ ଦାସ ତାର ମୁରବୀ, ତାଙ୍କ ଅନୁମତି ନ ପାଇ ସେ ହଷ୍ଟେଲ ଛାଡ଼ିନି ।

ପ୍ରଫୁଲ୍ଲକୁ ମୁଁ ଖୁବ୍ ସ୍ନେହ କରୁଥିଲି । ତା ବଡ଼ଭାଇ ଲଳିତ କୁମାର ପତି ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ପ୍ରଫୁଲ୍ଲ ମଧ୍ୟ ମୋତେ ଶ୍ରଦ୍ଧା ଓ ସମ୍ମାନ କରୁଥିଲା । ତା'

ଠାରୁ ବିଦାୟ ନେବାପାଇଁ ମୁଁ ତା ରୁମ୍‌କୁ ଗଲାବେଳକୁ ସେ ଖଟଉପରେ ବସି ସାନପିଲାଙ୍କ ପରି କଇଁକଇଁ ହୋଇ କାନ୍ଦୁଛି । ମୁଁ କିଛି କହିବା ପୂର୍ବରୁ ସେ ମୋ ହାତକୁ ଜାବୋଡ଼ି ଧରିଲା– 'ମୁଁ ଆଉ ସହିପାରୁନି, ମୋତେ ସାଙ୍ଗରେ ନେଇଯାନ୍ତୁ'– କି ଆକୁଳ ଅନୁରୋଧ, ଜମାଟବନ୍ଧା ଲୁହ ବରଫ ତରଳିଲାପରି ବୋହିଯାଉଥାଏ ।

ମୁଁ ଇତିହାସ ଛାତ୍ର ଥିଲି । ପ୍ରଫେସର ଘନଶ୍ୟାମ ଦାସ ମୋତେ ନିଜ ପୁଅପରି ସୁଖପାଉଥିଲେ । ମୁଁ ତାଙ୍କଠୁ ବିଦାୟ ନେଲାବେଳକୁ ମୋତେ ନିଜ ଛାତିରେ ଜୋର୍‌ରେ ଜାକିପକାଇଲେ । ଛାତି ଜୋର୍‌ରେ ପଡୁଛି ଓ ଉଠୁଛି । ନ ଦେଖିଲେ ମଧ୍ୟ, ସେ ନିଜକୁ ସଂଭାଳିବା ପାଇଁ ଯଥାସାଧ୍ୟ ଉଦ୍ୟମ କରୁଛନ୍ତି ବୋଲି ବୁଝିପାରିଲି । ନିଶ୍ୱାସ ବନ୍ଦହୋଇ ଆସୁଥିଲା, ନିଜକୁ ଛିଣ୍ଡାଇ ନେଲାପରି ବାହାରକୁ ଚାଲିଆସିଲି, ପଛକୁ ଆଉ ଅନେଇ ନାହିଁ ।

ଟେନିସ୍‌କୋର୍ଟରୁ ଆରମ୍ଭ ହେଲା ଶୋଭାଯାତ୍ରା । ହାତରେ ମଶାଲର ନିଆଁ, ମନରେ ବିପ୍ଳବର ନିଆଁ, ଚାରିଆଡ଼େ ନିଆଁଖେଳ, ହୁଏତ ଜାଳିପୋଡ଼ି ଦେବ ନଚେତ୍ ଜଳିପୋଡ଼ିଯିବ । ଶହ ଶହ ଦର୍ଶକ ରୁଣ୍ଡହୋଇଛନ୍ତି ବିଜୟ କାମନା କରି–କିଏ ଫୁଲମାଳ ପିନ୍ଧେଇ ଦେଉଛି ତ କିଏ ସିନ୍ଦୂରଟୀକା ଲଗାଇଦେଉଛି । ପାନ, ବିଡ଼ି, ସିଗାରେଟ୍‌ର ବି ଗଦା-ବିଡ଼ା । 'ଇନ୍‌କିଲାବ-ଜିନ୍ଦାବାଦ'ସ୍ଲୋଗାନରେ ବାୟୁମଣ୍ଡଳ ଫାଟିପଡୁଛି ।

ଶୋଭାଯାତ୍ରା ବାହାରିବା ପରେ ମୁଁ ଓ ବୈଦ୍ୟନାଥ ରଥ ମେଡ଼ିକାଲ ସ୍କୁଲ ହଷ୍ଟେଲକୁ ଗଲୁ । ୧୯୩୯ର ମେଡ଼ିକାଲ ସ୍କୁଲ ଧର୍ମଘଟ ଦିନଠାରୁ ଆମେ ସମସ୍ତେ ସହଯୋଗୀଭାବେ କାମକରୁଥିଲୁ । ଆମ ଆନ୍ଦୋଳନରେ ସେମାନେ ସହଯୋଗ କରୁଥାନ୍ତି । ତହିଁ ପରଦିନ କର୍ମପନ୍ଥା ବିଷୟରେ ଆଲୋଚନା କରିବା ଆମ ଯିବାର ଉଦ୍ଦେଶ୍ୟ । ଆଲୋଚନା ପରେ ମେଡ଼ିକାଲସ୍କୁଲର ମଙ୍ଗଳାବାଗ୍ ଗେଟ ଦେଇ ବାହାରିଲାବେଳକୁ ପୁଲିସ ଭ୍ୟାନ ସହିତ ଲାଲବାଗ ପୁଲିସ-ଇନ୍‌ସପେକ୍‌ଟର ଶ୍ରୀପତି ନନ୍ଦ ଗିରଫ ପରଓ୍ୱାନା ଧରି ଅପେକ୍ଷା କରିଛନ୍ତି । ପ୍ରଥମେ ଆମେ ଦୁହେଁ ଗିରଫ ହେଲୁ ।

ପୁଲିସଭ୍ୟାନ୍ ମଙ୍ଗଳାବାଗ ଦେଇ ଗଲାବେଳକୁ ରାସ୍ତାରେ ଛାତ୍ରଶୋଭାଯାତ୍ରା ରହିଛି । ଆମକୁ ଦେଖି ଭ୍ୟାନକୁ ସେମାନେ ଘେରିଗଲେ । ଆମେ ଭ୍ୟାନ୍‌ରୁ ଓହ୍ଲାଇଲୁ । ଶ୍ରୀପତିବାବୁ ପ୍ରଥମେ ଅମଙ୍ଗ ହେଉଥିଲେ, କିନ୍ତୁ ଅବସ୍ଥା ଦେଖି କିଛି କହିଲେ ନାହିଁ । ସମସ୍ତେ ଝୁଲିପଡ଼ିଛନ୍ତି ଆଗକୁ ନିଜ ଛାତିରେ ଆମକୁ ଭିଡ଼ିଧରିବାପାଇଁ । ଚାରିଆଡ଼େ ଅସଂଖ୍ୟ ହାତମାଳ ମଝିରେ ମୁଁ ବନ୍ଦୀ, ଗଳାଫଟା 'ଭାଇନା ଜିନ୍ଦାବାଦ' ସ୍ଲୋଗାନ । ଏତେ ସ୍ନେହ ଓ ଆଦରରେ ମୁଁ ବେଦମ୍ ହୋଇପଡ଼ିଲି । ସ୍ଲୋଗାନ ଦେଇ ଓ ବକ୍ତୃତା କରି କରି ତଣ୍ଟି ଖୋଲୁନଥିଲା । ତଥାପି କିଛି କହିବାକୁ ହେବ । ବିଚ୍ ରାସ୍ତାଉପରେ ବକ୍ତୃତା ଆଗରୁ ଅଭ୍ୟାସରେ ପଡ଼ିଯାଇଥିଲା । କହିଲି, ଶେଷ ନିଷ୍ପତ୍ତି କଥା ମନେ

ପକାଇ ଦେଲି–ହତାଶାର ସ୍ଥାନ ନାହିଁ, ଶେଷ ସୈନିକ ଥିବା ପର୍ଯ୍ୟନ୍ତ ଲଢ଼େଇ ଚାଲିବ । ସରକାର ଯଦି ଜବରଦସ୍ତି ପୁଲିସଭ୍ୟାନ୍‌କୁ କଲେଜ ହତାଭିତରକୁ ନେବାକୁ ଚାହାନ୍ତି, ତେବେ ଛାତ୍ରଙ୍କ ଛାତିଉପରେ ସେ ଭ୍ୟାନ ଚାଲୁ । ଆମେ ପ୍ରସ୍ତୁତ ବୋଲି ସମସ୍ୱରରେ ଜବାବ ମିଳିଲା । ସ୍ଲୋଗାନ ଉପରେ ସ୍ଲୋଗାନ ଚାଲିଲା । ରାସ୍ତାରେ ଲୋକଭିଡ଼ ହୋଇଗଲା । ଚଞ୍ଚଳ ଚାଲିନଗଲେ ଅବସ୍ଥା ଅଣଆୟତ୍ତ ହୋଇପଡ଼ିବ ବୋଲି ଅଭିଜ୍ଞ ପୋଲିସ ଅଫିସର ଶ୍ରୀପତିବାବୁ ବୁଝି ଭ୍ୟାନ୍‌ଭିତରକୁ ଯିବାକୁ ଇସାରା ଦେଲେ । ସେ କଣ ଡରୁଛନ୍ତି ମୁଁ ବୁଝିପାରିଲି । ସମସ୍ତ ଶକ୍ତି ସଂଚିତ ହୋଇ ରହୁ କାଲି ପର୍ଯ୍ୟନ୍ତ, ଆଜି ରାତିରେ ଅଯଥା ଅପଚୟ ନ ହେଉ । ଛାତ୍ରମାନେ ଛାଡ଼ିବାକୁ ନାରାଜ । ସେମାନଙ୍କୁ ବୁଝେଇସୁଝେଇ ଆମେ ଭ୍ୟାନ୍‌ରେ ଚଢ଼ିଲୁ । ଭ୍ୟାନ୍ ଚାଲିଥାଏ, ସ୍ଲୋଗାନ ଦେଇ ଛାତ୍ରମାନେ ପଛରେ ଦୌଡୁଥାନ୍ତି– ଗାଡ଼ିଚକ ତଳେ ପଡ଼ିଯିବେ ପରା । ମୋ ଜୀବନରେ ଏକ ଗୌରବମୟ ମୁହୂର୍ତ୍ତ ସେ ।

ଲାଲବାଗ୍ ପୁଲିସ ହାଜତରେ ଅନ୍ୟ ବନ୍ଧୁମାନଙ୍କୁ ଅପେକ୍ଷା କଲୁ । କିଛି ସମୟ ପରେ ରାମକୃଷ୍ଣ ପତି ଓ ଦୁର୍ଗାଚରଣ ମହାନ୍ତି ଗିରଫ ହୋଇ ଆସିଲେ, ତା'ପରେ ସୁରଜମଲ୍ଲ ସାହା । ଶ୍ରୀରାମଚନ୍ଦ୍ର ଦାସଙ୍କ ସହିତ ରିକ୍‌ସାରେ ଯାଉଥିବାବେଳେ ରାସ୍ତାରେ ସୁରଜ ଗିରଫ ହେଲା । ଶ୍ରୀରାମ ମଧ୍ୟ ଗରିଫ ହୋଇଥିଲା, କିନ୍ତୁ ତାର ପରିଚୟ ପାଇଲାପରେ ପୁଲିସ ତାକୁ ଛାଡ଼ିଦେଲେ । ସେଇ ରାତିରେ ଆଉ କେତେକ ବନ୍ଧୁ ଗିରଫ ହୋଇ ଆସିଲେ । ଶ୍ରୀପତିବାବୁ ତାଙ୍କ ଥାନା ଭିତର ଘରେ ଆମ ରାତି ଖାଇବା ବ୍ୟବସ୍ଥା କରିଥାନ୍ତି । ଆଠଦିନ ହେବ କିଛି ଖାଇନାହୁଁ ବୋଲି ମନେପଡ଼ିଲା । ରାତିସାରା ପୁଲିସ ହାଜତରେ ଉଜାଗର ରହି ଆଲୋଚନା କରିଛୁ, ଆସନ୍ତାକାଲିର ଏପଟ ସେପଟ ବିଷୟ ଚିନ୍ତାକରିଛୁ, କେଉଁଠି କ'ଣ ଚାଲିଛି ଜାଣିବା ପାଇଁ ଉଦ୍‌ଗ୍ରୀବ ରହିଛୁ... ସକାଳ ହୋଇଗଲା । ତା' ପରେ କଟକ ଜେଲ୍ ଆଠନମ୍ବର ଓ୍ୱାଡ଼ରେ ପୂର୍ବରୁ ଗିରଫ ହୋଇଥିବା ବନ୍ଧୁମାନଙ୍କ ସହିତ ଭେଟ ଓ ଇନ୍‌କିଲାବ ଜିନ୍ଦାବାଦ୍ ଧ୍ୱନିରେ ପରସ୍ପରକୁ ଅଭିନନ୍ଦନ ।

ଛାତ୍ର ଶୋଭାଯାତ୍ରା ପହଞ୍ଚିଲା ବେଳକୁ ସ୍ୱରାଜ୍ୟ ଆଶ୍ରମର ପ୍ରଧାନ ଫାଟକରେ ବଡ଼ ତାଲା ପଡ଼ିଛି । କଂଗ୍ରେସ କର୍ମକର୍ତ୍ତାମାନଙ୍କ ସହିତ ପୂର୍ବରୁ କଥାବାର୍ତ୍ତା ହୋଇଥିଲା– ଆଶ୍ଚର୍ଯ୍ୟ ଲାଗିଲା । ଏପରି ହେବ ବୋଲି ପୂର୍ବରୁ କେହି କଳ୍ପନା କରିନଥିଲେ । ସାମାନ୍ୟ ସନ୍ଦେହ ଥିଲେ ସେମାନେ ଅନ୍ୟସ୍ଥାନ ଖୋଜିଥାନ୍ତେ । ଛାତ୍ରମାନେ ନଛୋଡ଼ବନ୍ଧା– କଂଗ୍ରେସ ଅଫିସରେ ରହିବାର ଅଧିକାର ସେମାନଙ୍କର ଅଛି । ଏ କାହାର ବ୍ୟକ୍ତିଗତ ସଂପତ୍ତି ନୁହେଁ । ତାଲାଭାଙ୍ଗି ସେମାନେ ଭିତରେ ପଶିଲେ । ରାତିସାରା ଉଜାଗର– ଘନଘନ ସ୍ଲୋଗାନ ଭିତରେ 'ସକାଳ' ପାଇଁ ପ୍ରସ୍ତୁତି ।

ଫେବୃଆରୀ ୨୬ ତାରିଖ । ଆମେ ପୂର୍ବେ ପାଇଥିବା ସମ୍ବାଦ ଠିକ୍ ହେଲା । ରେଭେନ୍‌ସା କଲେଜ ଆଡ଼କୁ ଗୋଟାକ ପରେ ଗୋଟେ ପୁଲିସ ଭ୍ୟାନ୍ ଚାଲିଛି । ପ୍ରତ୍ୟେକ ଭ୍ୟାନ ଦାୟିତ୍ୱରେ ଜଣେ ପୁଲିସ ଇନସପେକ୍‌ଟର । ସଶସ୍ତ୍ର ପୁଲିସ ଭର୍ତ୍ତି ହୋଇଛନ୍ତି । ତା ଭିତରେ କେତେକ ସରକାରୀ କର୍ମଚାରୀ ସେମାନଙ୍କ ପିଲାଙ୍କୁ ଜବରଦସ୍ତି ଆଣିଛନ୍ତି ପରୀକ୍ଷା ଦେବାପାଇଁ । ପରିସ୍ଥିତିକୁ ଆୟତ୍ତ କରିବାର ସର୍ବୋଚ୍ଚ ଦାୟିତ୍ୱ ଗୋରା ପୁଲିସ ସାହେବଙ୍କର । ସେ ମଧ୍ୟ ସାଙ୍ଗରେ ଚାଲିଛନ୍ତି । ପୁଲିସଭ୍ୟାନ ରାଣୀହାଟ ପୋଲ ପାଖରେ ପହଞ୍ଚିଲାବେଳକୁ ରାସ୍ତା ବନ୍ଦ । ପୋଲଠୁ ଆରମ୍ଭ କରି କଲେଜ ଦୁଆର ମୁହଁ ପର୍ଯ୍ୟନ୍ତ ଛାତ୍ରମାନେ ରାସ୍ତା ଅବରୋଧ କରି ଶୋଇରହିଛନ୍ତି । ଭ୍ୟାନ୍ ଅଟକିଗଲା । ପୁଲିସ ସାହେବ ରାଗିଗଲେ, ନିର୍ଦ୍ଦିଷ୍ଟ ସମୟ ଭିତରେ ରାସ୍ତା ଛାଡ଼ିଦେବାକୁ ଛାତ୍ରମାନଙ୍କୁ ନିର୍ଦ୍ଦେଶ ଦେଲେ । ଛାତ୍ରମାନେ 'ଇନ୍‌କିଲାବ ଜିନ୍ଦାବାଦ' ଧ୍ୱନିରେ ତାର ଉତ୍ତର ଦେଲେ । ସାହେବଙ୍କୁ ଅପମାନ ଲାଗିଲା ବୋଧହୁଏ । ଗାଡ଼ି ଷ୍ଟାର୍ଟ କରିବାକୁ ସେ ଇନ୍‌ସପେକ୍‌ଟରମାନଙ୍କୁ ନିର୍ଦ୍ଦେଶ ଦେଲେ । ସାହେବ ବୋଧହୁଏ ଭାବିଲେ ଯେ ଗାଡ଼ି ଷ୍ଟାର୍ଟ କରିଦେଲେ ହୁଏତ ଛାତ୍ରମାନେ ଭୟରେ ଉଠିଯିବେ । ପ୍ରଥମଗାଡ଼ିର ଦାୟିତ୍ୱରେ ଥିବା ଇନ୍‌ସ୍‌ପେକ୍ଟର ମୁକୁନ୍ଦ ମିଶ୍ର କାଠପରି ଛିଡ଼ାହୋଇଛନ୍ତି । ରାସ୍ତା ଉପରେ ତାଙ୍କ ଜୋଇଁ ଫକୀର ଚରଣ ଦାସ ଶୋଇଛନ୍ତି । ଫକୁ ସେଇ ବର୍ଷ ପୁରୀରୁ ରେଭେନ୍‌ସା କଲେଜର ପ୍ରଥମଶ୍ରେଣୀକୁ ଆସିଥିଲା । ଅଳ୍ପଦିନ ପୂର୍ବରୁ ତାର ବିବାହ ହୋଇଥିଲା । ସେ ରାସ୍ତା ଉପରେ ଶୋଇଛି, କୁନି ଭାଇନା କହିଯାଇଛି ।

ସାହେବ ଅଧୈର୍ଯ୍ୟ ହୋଇପଡ଼ିଲେ । ଛାତ୍ରମାନଙ୍କୁ କୁଦି ଚକଟି ଟେକି ପୋଲତଳକୁ ଫୋପାଡ଼ି ଦିଅ ବୋଲି ନିର୍ଦ୍ଦେଶ ଦେବାମାତ୍ରକେ ରାଜଭକ୍ତ ରିଜର୍ଭ ପୁଲିସ ଫୌଜ ସାହେବଙ୍କୁ ଖୁସି କରିବା ପାଇଁ ନିଜର ସମସ୍ତ ଶକ୍ତି ପ୍ରୟୋଗରେ ଲାଗିଗଲେ । କେତେ ଛାତ୍ର ଜଖମ ହେଲେ, କେତେ ପୋଲତଳେ ଅଜ୍ଞାନ ହେଲେ, କେତେ ଡାକ୍ତରଖାନାକୁ ବୁହାହେଲେ— ତା' ଯଦୁମଣି ମଙ୍ଗରାଜଙ୍କ ବେସରକାରୀ ନିରପେକ୍ଷ ତଦନ୍ତ କମିଟିର ରିପୋର୍ଟରୁ ଜଣାପଡ଼ିବ ।

ପୁଲିସ୍ ଭଲ ମାଡ଼ ମାରିଥିବା ଯୋଗୁ ସାହେବ ଖୁସୀହୋଇଗଲେ । ରାସ୍ତା ସାଫ— ସମସ୍ତଙ୍କୁ ଡାକ୍ତରଖାନାକୁ ବିଦା କରି ଦିଆଯାଇଛି । କଲେଜ ଫାଟକକୁ ବନ୍ଦକରି କେବଳ ଛିଡ଼ା ହୋଇଛନ୍ତି ବଳରାମ ମହାନ୍ତି । ଲାଠି ଉପରେ ଲାଠି— ପ୍ରତ୍ୟେକ ଲାଠିକୁ 'ଇନ୍‌କିଲାବ ଜିନ୍ଦାବାଦ'ରେ ଉତ୍ତର ଶେଷ ସୈନିକର କର୍ତ୍ତବ୍ୟ ପାଳନ । ଗୋଟାଏ ପିଲା କେତେ ସମ୍ଭାଳିବ । ସେ ଅଚେତା ହୋଇଗଲା ପରେ କଲେଜ ଫାଟକ ଖୋଲିଗଲା ।

କଲେଜ କମ୍ପାଉଣ୍ଡ ପୁଲିସ ଛାଉଣୀରେ ପରିଣତ ହୋଇଛି । ବାଧା ଦେବାକୁ କେହି ନାହାନ୍ତି, ବୁଝାଇବାକୁ କେହି ନାହାନ୍ତି । ପୁଲିସ ଭ୍ୟାନରେ ଆସିଥିବା ଛାତ୍ରମାନେ

ନିଜ ଆଖିଆଗରେ ସବୁ ଦେଖି ଜଳକା ହୋଇଯାଇଛନ୍ତି । ଗୁରୁଜନମାନେ ପରୀକ୍ଷା ହଲକୁ ବାଟ କଢ଼ାଇ ନେଇଛନ୍ତି, କାଳି କଲମ ସବୁ ଯୋଗାଇ ଦିଆଯାଉଛି । ଘଣ୍ଟାଏ ଡେରି ପରେ ପରୀକ୍ଷା ଆରମ୍ଭ ହୋଇଛି । ପରେ କେତେକ ଛାତ୍ର ପରୀକ୍ଷା ଚାଲିଛି ବୋଲି ଦେଖୁଛନ୍ତି, ସେମାନଙ୍କୁ ଡାକରା ହେଉଛି– ଯେତେ ଡେରି ପର୍ଯ୍ୟନ୍ତ ଲେଖିଲେ ବି କିଛି ଯାଏଆସେ ନାହିଁ ବୋଲି କୁହାଯାଉଛି । କାଳି କଲମ ତ ଯୋଗାଇଦିଆଯାଉଛି, ଜଳଖିଆ ଦେବାର ବ୍ୟବସ୍ଥା ହୋଇଛି । କେତେକ ଯାଉଛନ୍ତି, କେତେକ ଯାଉନାହାନ୍ତି, କେତେକ ଗୁରୁଜନମାନଙ୍କ ଦୌରାତ୍ମ୍ୟରେ ବାଧ୍ୟ ହୋଇ ଯାଇ ହଲ୍‌ରେ ମୂର୍ଚ୍ଛା ହୋଇଯିବାର ଅଭିନୟ କରିଛନ୍ତି । କିଏ କେଉଁ କାରଣରୁ କ'ଣ କଲା–ତା ଆଉ ଏକ କାହାଣୀ ।

ଶ୍ରୀ ମନମୋହନ ମିଶ୍ର ଓ ବନମାଳୀ ପଟ୍ଟନାୟକ ପ୍ରଭୃତି ପୁଣି କେତେକ ବନ୍ଧୁ ଗିରଫ ହୋଇ ଦୁଇ ତିନିଦିନ ଭିତରେ ଆମ ସହିତ କଟକ ଜେଲରେ ଯୋଗଦେଲେ । ଆମ ଗିରଫ ଖବର ପାଇ ନୀଳମଣି ଆତ୍ମଗୋପନ କରିଥିଲା । ଜଣେ ଗୁଇନ୍ଦା ଅଫିସର ତାକୁ ସାହାଯ୍ୟ କରିଥିଲେ । ସେ ଗିରଫ ହେଲା । ଗଙ୍ଗାଧର ମହାପାତ୍ର ଓ ବିଜୟଚନ୍ଦ୍ର ଦାସ ଭୋକ ଓପାସରେ ଦୁଇ ତିନିଦିନ ବୁଲିବା ପରେ ଚଉଧୁରୀବଜାର ପାର୍କ ହୋଟେଲ ପାଖରେ ଧରାହେଲେ । କଟକ ଜେଲରେ ପୁଣି ଆମ ଆଡ୍‌ଡା ଜମିଲା ।

ରେଭେନ୍‌ସା କଲେଜ ଟେନିସ୍‌କୋର୍ଟ–ଆମ ଯୌବନର ଖେଳାଭୂମି, ଆମ ବିଜୟ-ପରାଜୟ ମୂକସାକ୍ଷୀ । ଏବେ ବି ସେଇ ରାସ୍ତା ଦେଇ ଗଲାବେଳେ, ବେଳେ ବେଳେ ଡାକେ; କେତେ ସୁଖ-ଦୁଃଖ କଥାବାର୍ତ୍ତା କରେ, କେତେ ସ୍ମୃତି ମନେ ପକାଇଦିଏ ।

୩୫ ବର୍ଷ ହୋଇଗଲା । କେତେ ବନ୍ଧୁ ଚିରଦିନ ପାଇଁ ବିଦାୟ ନେଇଗଲେଣି । ବେଳେବେଳେ ଭାବିଲେ ବିଶ୍ୱାସ ହୁଏ ନାହିଁ । କାଲିପରି ଲାଗୁଛି । ଆମେ ସତେ ଯେମିତି ଆଜିଯାଏ ସମସ୍ତେ ବନ୍ଧା ହୋଇ ରହିଛୁ !

(୨୩)

## କଟକ ଜେଲ

ବି.ଏ. ପରୀକ୍ଷା ଦେବା ହେଲା ନାହିଁ । ଲାଲବାଗ ଥାନାରୁ ଆମ ଚାରିଜଣଙ୍କୁ କଟକ ଜେଲ୍‌କୁ ନିଆଗଲା । ପୂର୍ବରୁ ଅଶୋକ ଦାସ ଓ ସଚ୍ଚି ରାଉତରାୟ ଗିରଫ ହୋଇ ସେଠାରେ ଥିଲେ । ଦିନେ ଦୁଇଦିନ ମଧ୍ୟରେ ଗିରଫ ହୋଇ ଆସିଲେ ବିଜୟଚନ୍ଦ୍ର

ଦାସ, ଗଙ୍ଗାଧର ମହାପାତ୍ର, ନୀଳମଣି ରାଉତରାୟ, ସୁରଜମଲ୍ଲ ସାହା, ମନମୋହନ ମିଶ୍ର, ସୁଦର୍ଶନ ମିଶ୍ର, ବନମାଳୀ ପଟ୍ଟନାୟକ, ଭବତୋଷ ରକ୍ଷୀତ ।

କଏଦୀର ପୋଷାକ ଓ ଖାଦ୍ୟ । ପୋଷାକରେ ଗୋଟାଏ ନମ୍ବର । କଏଦୀର ନାମ ନାହିଁ, ସେ ନମ୍ବର ହିଁ ତାର ପରିଚୟ । ସକାଳେ ଲୁହାଦୁଆରର ତାଲା ଖୋଲିବା ପୂର୍ବରୁ ଓ ରାତିରେ ବନ୍ଦହେଲାବେଳେ, ସମସ୍ତେ ଅଛନ୍ତି କି ନାହିଁ ଜାଣିବାକୁ ନମ୍ବରରେ ଗଣତି ହୁଏ । ଖାଦ୍ୟ—ମୋଟା ରୁଟି, ତେନ୍ତୁଳି ଖଟା ଓ ଶାଗ ନାଁରେ ଘାସ । ଆମେ ପ୍ରତିବାଦ-ଅନଶନ କଲାପରେ ଗୋଟିଏ ସାଧା ତରକାରି ଖାଦ୍ୟରେ ଯୋଡ଼ାହେଲା । ସେହି ସମୟରେ ନନା ଦିନେ ମୋତେ ଦେଖିବାକୁ ଆସିଥିଲେ । ଶୁଖିଲା ମୁହଁ, କଏଦୀ ପୋଷାକ ଓ ପାଦରେ ଚଟି ନଥିବା ଦେଖି ତାଙ୍କ ଆଖି ଛଳଛଳ ହୋଇଯାଇଥିଲା । ଫେରିଯାଇ ଦୁଇହଳ ଚଟି ପଠାଇଦେଇଥିଲେ । କିଛି ଦରକାର ନଥିଲା ।

ବହୁଦିନପରେ କିଛି ବିଶ୍ରାମ ମିଳିଲା । ସଚ୍ଚି ରାଉତରାୟଙ୍କ କବିତା, ରାମକୃଷ୍ଣ ପତିଙ୍କ 'ମାର୍କସଜିମ୍' ଥିଓରୀ ଚର୍ଚ୍ଚା, ଅଶୋକ ଭାଇନାଙ୍କ ମଜାଗପ, ବଇଦା ଭାଇନା ଓ ସୁରଜ୍‌ର ପାଟିତୁଣ୍ଡରେ ସମୟ କଟିଯାଉଥିଲା । ମାର୍କସଜିମ୍ ଥିଓରୀ ବିଷୟରେ ରାମବାବୁ ୩୨ ପୃଷ୍ଠାର ଗୋଟିଏ ସଂଦର୍ଭ ଲେଖିଥିଲେ । ତାହା ଗବେଷକଙ୍କଦ୍ୱାରା ୩୦୦୦ପୃଷ୍ଠା ହୋଇଯିବ ବୋଲି ମୁଁ କହିଲାରୁ ସେ ହସିଥିଲେ ।

କିଛିଦିନପରେ ମଧୁବାବୁ ଆମର ଜାମିନଦାର ହେଲେ ଓ ଆମେ ଖଲାସ ହେଲୁ । ପିଙ୍ଗଲ କୋଡ୍‌ର ବିଭିନ୍ନ ଦଫାରେ ଆମ ବିରୁଦ୍ଧରେ ମକଦ୍ଦମାର ବିଚାର ମାଜିଷ୍ଟ୍ରେଟ ଜଗଦାନନ୍ଦ ମହାପାତ୍ରଙ୍କ ଇଜ୍‌ଲାସ୍‌ରେ ଚାଲିଲା । ସକାଳୁଆ କଚେରି । ଆମ ବିରୁଦ୍ଧରେ ସାକ୍ଷୀ ଅଧକ୍ଷ ଓ କେତେକ ଅଧ୍ୟାପକ । ରାଜକିଶୋର ଦାସ, ଦୀନବନ୍ଧୁ ସାହୁ, ଚନ୍ଦ୍ରକାନ୍ତ ଘୋଷ ଆମ ଓକିଲ । ଇଚ୍ଛାନୁଯାୟୀ ଆମେ କାଠଗଡ଼ାରେ ଛିଡ଼ା ହେଉ ବା ବାହାରିଆସୁ । ବହୁ ଛାତ୍ର ସେଠାରେ ରୁଣ୍ଡ ହୋଇ ସ୍ଲୋଗାନ ଦିଅନ୍ତି । ଯେଉଁଠି ଯାହା ମିଳିଲା ଖାଉ । ଦିନଟାଯାକ ବୁଲାବୁଲି । ସଂଧ୍ୟାବେଳେ ସାଧାରଣ ସଭା ଓ ରାତିରେ ରେଳଷ୍ଟେସନ ବା ଚଉଧୁରୀବଜାର ଧର୍ମଶାଳାର ଛାତ ବା କାୟସ୍ଥ ବୋର୍ଡ଼ିଂରେ ବିଶ୍ରାମ । ସେଥିରେ ଦୁଃଖ ନଥିଲା— ଥିଲା ତୃପ୍ତି, ଆନନ୍ଦ— ଆମେ ନିଜେ ତ ବାଛିନେଇଛୁ ସେ ଜୀବନ !

ଧର୍ମଘଟରେ ନିନ୍ଦା କରିବାକୁ କଟକ ସହରର କେତେକ ଅଭିଭାବକ ଟାଉନ୍‌ହଲ୍‌ରେ ଦିନେ ସଭା ଡାକିଥିଲେ । ସେମାନେ ପହଞ୍ଚିଲାବେଳକୁ ଟାଉନ୍‌ହଲ୍ ଛାତ୍ରଙ୍କ ଦ୍ୱାରା ଭରପୂର ହୋଇଯାଇଥିଲା— ଭିତରେ ପଶି ନପାରି ସେମାନେ ନିରାଶ ହୋଇ ଫେରିଗଲେ । ଅଶୋକ ଭାଇନାଙ୍କ ପ୍ରସ୍ତାବକ୍ରମେ ମୋ ସଭାପତିତ୍ୱରେ ସଭା ହୋଇ ସରକାରୀ ଦମନ ନୀତିକୁ ନିନ୍ଦା କରି ପ୍ରସ୍ତାବ ଗୃହୀତ ହୋଇଥିଲା ।

ବିଚାରରେ ଆମେ ଦଣ୍ଡିତ ହେଲୁ– ୫୦ଟଙ୍କା ଜୋରିମାନା, ନ ଦେଲେ ମାସେ ଜେଲ୍ । ଜିଲ୍ଲା ଜଜ୍‌ଙ୍କ କୋର୍ଟରେ ଅପିଲ ଦାଏର ହେଲା । ମନେଅଛି, ପୁଲିସ ଆମକୁ ହାତକଡ଼ି ପକାଇ କୋର୍ଟରେ ହାଜର କଲାବେଳେ ଜଜ୍ ମାହେର ସାହେବ ଉତ୍ତ୍ୟକ୍ତ ହୋଇ ହାତକଡ଼ି ଖୋଲିଦେବାକୁ ପୁଲିସ୍‌କୁ ନିର୍ଦ୍ଦେଶ ଦେଇଥିଲେ । ଅପିଲ୍‌ରେ ଜଜ୍‌ସାହେବ ଆମକୁ ଦୋଷମୁକ୍ତ କରି ଖଲାସ କରିଦେଲେ ।

ବ୍ରହ୍ମପୁରର ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଥିଲେ 'ସୁଆନ୍' ସାହେବ । 'ବ୍ରିଟିଶ ସରକାର ହଟିଯାଅ' ବୋଲି ସ୍ଲୋଗାନ ଦେଇ ଆମେ କେତେକ ଛାତ୍ର ଶୋଭାଯାତ୍ରାରେ ଯାଉଥିବାବେଳେ ପୁଲିସ ଆମକୁ ଗିରଫ କରି ତାଙ୍କ କୋର୍ଟରେ ହାଜର କରାଇଥିଲା । ଏହି ସ୍ଲୋଗାନ ରାଜଦ୍ରୋହ ନୁହେଁ ବୋଲି କହି ସେ ଆମକୁ ଛାଡ଼ିଦେଇଥିଲେ ।

## (୨୪)

## ଆଉ କେତୋଟି ମକଦ୍ଦମା

ଉପରୋକ୍ତ ମକଦ୍ଦମାଗୁଡ଼ିକ ଛଡ଼ା ସୁରଜ୍ ଓ ମୋ ବିରୁଦ୍ଧରେ ଗୋଟିଏ ସ୍ୱତନ୍ତ୍ର ମକଦ୍ଦମା ହୋଇଥିଲା । ମକଦ୍ଦମାର ବିଷୟବସ୍ତୁ ମନେପଡୁନି– ତାହା ମୁଁ ନିଜେ ଲଢ଼ିଥିଲି । ମୋର ସଫେଇ ସାକ୍ଷୀ ଥିଲେ ବୀରେନ୍ ମିତ୍ର ଓ ଗଙ୍ଗାଧର ମହାପାତ୍ର । ତୁମର ବ୍ୟବସାୟ କ'ଣ ବୋଲି ମାଜିଷ୍ଟ୍ରେଟଙ୍କ ପ୍ରଶ୍ନର ଉତ୍ତରରେ ସେ ଦୁହେଁ 'ଭାଗାବଣ୍ଡ' ବୋଲି ଉତ୍ତରଦେଲେ । ଭାଗାବଣ୍ଡଙ୍କ ସାକ୍ଷ୍ୟକୁ ଗ୍ରହଣ ନକରି ମାଜିଷ୍ଟ୍ରେଟ ମୋତେ ଓ ସୁରଜ୍‌ଙ୍କୁ ଅର୍ଥଦଣ୍ଡରେ ଦଣ୍ଡିତକଲେ ।

ତା'ର ବହୁବର୍ଷ ପରେ ବୀରେନ୍ ମିତ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ, ମୁଁ କେନ୍ଦ୍ରମନ୍ତ୍ରୀ ଓ ଉପରୋକ୍ତ ମାଜିଷ୍ଟ୍ରେଟ ମହୋଦୟ ଅତିରିକ୍ତ ଚିଫ୍-ସେକ୍ରେଟାରୀ । ବୀରେନ୍ ମୋର ଘନିଷ୍ଠ ବନ୍ଧୁ ଥିଲା । ଦିଲ୍ଲୀ ଗଲେ ମୋ ଘରେ ରହୁଥିଲା । ମୁଁ ଥରେ ଓଡ଼ିଶା ଗସ୍ତରୁ ଦିଲ୍ଲୀ ଫେରିଲାବେଳେ ବୀରେନ୍ ଘରକୁ ଯାଇଥିଲି । ତା ଘର ବାରଣ୍ଡାରେ ସେଇ ଅତିରିକ୍ତ ଚିଫ-ସେକ୍ରେଟାରୀଙ୍କ ସହିତ ଦେଖାହେଲା । 'କ'ଣ ଖବର ସାର୍' ବୋଲି ତାଙ୍କ ପ୍ରଶ୍ନର ଉତ୍ତରରେ 'ସବୁ ଭାଗାବଣ୍ଡ ମନ୍ତ୍ରୀ ହୋଇଗଲେ' ବୋଲି ମୁଁ ତାଙ୍କୁ କହିଲି । ସେ ଥିଲେ ଇତିହାସର ଛାତ୍ର । ଇତିହାସ ସୃଷ୍ଟି କରିଥିବା ଭାଗାବଣ୍ଡମାନେ ନମସ୍ୟ ବୋଲି ସେ ମୋତେ ବୁଝାଇଥିଲେ ।

## (୨୫)

# ସୁରଜ୍‌ର ବିଚାର

ଛାତ୍ରାବାସର ଛାତ୍ରଗଣ ସାଂଧ୍ୟଭ୍ରମଣ ପାଇଁ ରେଳଷ୍ଟେସନକୁ ଯାଉଥିଲେ । ମହାନ୍ତିବାବୁ ନାମକ ଜନୈକ ଭଦ୍ରବ୍ୟକ୍ତି ଟି.ଟି.ଆଇ. ଥିଲେ । ସେ ପ୍ଲାଟଫର୍ମ ଟିକଟ ନଥିବା ଛାତ୍ରମାନଙ୍କଠାରୁ କେତେବେଳେ ଭଦ୍ରକ ବା କେତେବେଳେ ପୁରୀରୁ ଆସିଛ ବୋଲି ଯୁକ୍ତିରେ ରେଳଭଡ଼ା ଦାବି କରୁଥିଲେ । ଏମିତି ବହୁବାର ବହୁ ବଚସା ହୋଇଗଲା । ଦିନେ ପଶ୍ଚିମ ଛାତ୍ରାବାସର ଗଣେଶ୍ୱର ମିଶ୍ରଙ୍କୁ ଧରିଲେ । ଯୁକ୍ତି ଚାଲିଲା– ଏକପଟେ ଛାତ୍ରଗଣ ଓ ଅନ୍ୟପଟେ ଷ୍ଟେସନ-କର୍ମଚାରୀଗଣ । ଏତିକିବେଳେ ସୁରଜ ସେଠି ପହଞ୍ଚିଲା । ''ତୁମ କଲେଜ ପିଲାଙ୍କ କାଢ଼ ଆମେ ଧର୍ମଘଟ ବେଳୁ ଦେଖିଛୁ'' ବୋଲି ମହାନ୍ତିବାବୁ କହିବା ଶୁଣି ସୁରଜ୍ ଭିତରେ ପଶି ତାଙ୍କୁ ଦୁଇଚାପୁଡ଼ା ମାରିଲା । ପୁଲିସ ଇନ୍ସପେକ୍ଟର ରାଜକିଶୋର ମହାପାତ୍ର ତାକୁ ଗିରଫ କଲେ । ଛାତ୍ର ଉମାକାନ୍ତ ମିଶ୍ର ତାକୁ ଜାମିନରେ ଆଣିଲେ । ମାଜିଷ୍ଟ୍ରେଟ ଭଗବାନ ମହାପାତ୍ରଙ୍କ କୋର୍ଟରେ ସୁରଜ୍‌ର ବିଚାର ଚାଲିଲା । ସେତେବେଳକୁ ଆମେ ଜେଲ୍‌ରୁ ଫେରିଛୁ । ଲୁଗାପଟା କିଛି ନଥିଲା । ସୁରଜ୍ ଛିଣ୍ଡା ସାର୍ଟ ପିନ୍ଧି କଚେରିକୁ ଯାଇଥିଲା । ସୁରଜ୍ ମାଜିଷ୍ଟ୍ରେଟ୍‌ଙ୍କ ଜଣାଶୁଣା– ତାଙ୍କ ପୁଅର ବନ୍ଧୁ । 'ତୁମେ ମହାନ୍ତିବାବୁଙ୍କୁ ମାରିଲ କି ବୋଲି' ପ୍ରଶ୍ନର ଉତ୍ତରରେ 'ସେ ମୋ ସାର୍ଟ ଛିଣ୍ଡାଇ ଦେଇଛି, ଦେଖନ୍ତୁ, ବୋଲି ସୁରଜ୍ ଉତ୍ତର ଦେଲା । ମାଜିଷ୍ଟ୍ରେଟ ହସି ଦୁଇଟଙ୍କା ଜୋରିମାନା ଆଦେଶ ଦେଲେ । 'ଟଙ୍କା ନାହିଁ' ମୋତେ ଜେଲ୍‌କୁ ପଠାଇଦିଅନ୍ତୁ' ବୋଲି ସୁରଜ୍ କହିବାରେ ମାଜିଷ୍ଟ୍ରେଟ୍ ହସି ନିଜେ ଜୋରିମାନା ଟଙ୍କା ଦାଖଲ କରିଥିଲେ ।

ପରବର୍ତ୍ତୀ କାଳରେ ଗଣେଶ୍ୱର ହେଲା ରେଭେନ୍ସା କଲେଜରେ ଦର୍ଶନଶାସ୍ତ୍ରର ଅଧ୍ୟାପକ, ଉମାକାନ୍ତ ଓ ସୁରଜ୍ ନାମଜାଦା ଓକିଲ । ଆଜି ସେମାନେ କେହି ନାହାନ୍ତି– ମୁଁ ସେ ସ୍ମୃତିକୁ ବହନକରି ଚାଲିଛି ।

ବହୁବର୍ଷ ପରେ ମୁଁ ମାଡ୍ରାସ ମେଲ୍‌ରେ ବ୍ରହ୍ମପୁର ଗଲି ଗୋଟିଏ ମକଦ୍ଦମା ଲଢ଼ିବାପାଇଁ । ଦ୍ୱିତୀୟଶ୍ରେଣୀ ଟିକଟ– ଗାଡ଼ି ଛାଡ଼ିଲାବେଳକୁ ଭୁଲ୍‌ରେ ପ୍ରଥମ ଶ୍ରେଣୀରେ ଚଢ଼ିଗଲି । ବ୍ରହ୍ମପୁର ଷ୍ଟେସନରେ ଓହ୍ଲାଇବାବେଳକୁ ଟି.ଟି.ଆଇ. ମହାନ୍ତି ଠିଆହେବାର ଦେଖିଲି । ଓହ୍ଲାଇପଡ଼ି ଜୋର୍‌ରେ ଚାଲିଲି । ମହାନ୍ତିବାବୁ ଚାଲିଛନ୍ତି ପଛରେ– 'ଟିକେଟ୍ ଦେଖାଅ' କହି । ମୁଁ ଚାଲିଲି ଆଗକୁ– 'ମାଡ଼ ମନେନାହିଁ କି– ଭୁଲିଗଲ କି' କହି ଆଉ କୌଣସି ପ୍ରଶ୍ନ ଶୁଣିଲି ନାହିଁ । ପଛକୁ ଚାହିଁ ଦେଖିଲି ଯେ ମହାନ୍ତିବାବୁ ମୋତେ ଚାହିଁ ଛିଡ଼ାହୋଇଛନ୍ତି ।

## (୨୬)

# ସାଲିସ ବିରୋଧୀ ସମ୍ମିଳନୀ

୧୯୪୦ ମସିହାରେ ମୌଲାନା ଆଜାଦଙ୍କ ସଭାପତିତ୍ୱରେ ରାମଗଡ଼ କଂଗ୍ରେସ ଅଧିବେଶନ ବସିଲା । ଯୁଦ୍ଧ ବିଷୟରେ କଂଗ୍ରେସ ନେତାମାନଙ୍କ ମତଭେଦ ହେଲା । ଏକଆଡ଼େ ଗାନ୍ଧିଜୀ– ଅହିଂସାର ପୂଜାରୀ । ସେ କୌଣସିମତେ ଯୁଦ୍ଧରେ ପକ୍ଷ ନେବାକୁ ରାଜି ନଥିଲେ । ପୃଥିବୀ-ବ୍ୟାପୀ ହିଂସା ଓ ମୃତ୍ୟୁର କରାଳ ଚିତ୍ରରେ ବ୍ୟଥିତ ହୋଇ ସେ ଆତ୍ମହତ୍ୟା କଥା ଚିନ୍ତା କରିଥିଲେ ବୋଲି ମୌଲାନା ଆଜାଦ୍ 'India Wins Freedom' ପୁସ୍ତକରେ ଲେଖିଛନ୍ତି । ଅସ୍ତ୍ରଶସ୍ତ୍ର ପରିତ୍ୟାଗକରି ଆଧ୍ୟାତ୍ମିକ ଶକ୍ତିର ସାହାଯ୍ୟରେ ଜର୍ମାନୀ ସହିତ ଲଢ଼ିବାକୁ ସେ ବ୍ରିଟେନ୍‌ବାସୀଙ୍କୁ ଉପଦେଶ ଦେଇଥିଲେ । ତାଙ୍କର ଏପରି ପ୍ରସ୍ତାବରେ ଥରେ ବଡ଼ଲାଟ ଲିନ୍‌ଲିଥଗୋ ଏପରି ବିସ୍ମିତ ହୋଇଗଲେ ଯେ ଗାନ୍ଧିଜୀ କେତେବେଳୁ ଉଠି ଚାଲିଗଲେଣି ତାହା ଜାଣିପାରିନଥିଲେ । ଗାନ୍ଧିଜୀଙ୍କ ସହିତ ସର୍ଦ୍ଦାର ପଟେଲ, ଡକ୍ଟର ରାଜେନ୍ଦ୍ରପ୍ରସାଦ ପ୍ରମୁଖ କଂଗ୍ରେସର ଉଚ୍ଚ କର୍ମକର୍ତ୍ତା ଏକମତ । ମୌଲାନା ଆଜାଦ୍‌ଙ୍କର ଦୃଷ୍ଟିକୋଣ ଭିନ୍ନ ଥିଲା । ଯୁଦ୍ଧରେ ଲଢ଼ିବାକୁ ହେଲେ ମିତ୍ରଶକ୍ତି ସପକ୍ଷରେ ଲଢ଼ିବା କଥା, କିନ୍ତୁ ପରାଧୀନ ଭାରତ ସ୍ୱାଧୀନତା ନ ପାଇବା ପର୍ଯ୍ୟନ୍ତ କିପରି ସ୍ୱାଧୀନତା ପାଇଁ ଲଢ଼ିବ ବୋଲି ସେ ପ୍ରଶ୍ନ ଉଠାଇଥିଲେ । ପରିସ୍ଥିତିର ବିଚାରରେ ଅସହଯୋଗ ଆନ୍ଦୋଳନ ବ୍ୟତୀତ ଅନ୍ୟ ଉପାୟ ନାହିଁ ବୋଲି କଂଗ୍ରେସ ଅଧିବେଶନରେ ପ୍ରସ୍ତାବ ଗୃହୀତ ହେଲା । ସେତିକିବେଳେ କଂଗ୍ରେସ ଅଧିବେଶନର ଅନତିଦୂରରେ କୃଷକନେତା ସ୍ୱାମୀ ସହଜାନନ୍ଦ ସରସ୍ୱତୀ, ପ୍ରଫେସର ଏନ୍.ଜି. ରଂଗା, ଇନ୍ଦୁଲାଲ ଯାଜ୍ଞିକ ଓ ଭାରତୀ ଦେବୀ ପ୍ରମୁଖଙ୍କ ଉଦ୍ୟମରେ ସାଲିସ୍-ବିରୋଧୀ ସମ୍ମିଳନୀ ହୋଇଥିଲା । ଏଥିରେ ୨୧୦୦ଡେଲିଗେଟ୍ ଓ ଦୁଇଲକ୍ଷ ଲୋକ ଯୋଗ ଦେଇଥିଲେ । ସେହି ସଭାରେ କଂଗ୍ରେସର 'ସାଲିସ' ନୀତିକୁ ବିରୋଧକରି ସୁଭାଷବାବୁ ଗଣ-ଆନ୍ଦୋଳନର ଡାକରା ଦେଇଥିଲେ । ମୋର ଛାତ୍ରାବସ୍ଥାରେ ପ୍ରଫେସର ରଂଗା ଥରେ କଟକ ଆସିଥିଲାବେଳେ ମୋର ତାଙ୍କ ସହିତ ପରିଚୟ ହୋଇଥିଲା । ପରେ ମୁଁ, ପ୍ରଫେସର ରଙ୍ଗା ଓ ଇନ୍ଦୁଲାଲ ଯାଜ୍ଞିକ ଏକାସମୟରେ ଲୋକସଭାର ସଭ୍ୟ ଥିଲୁ ।

କଲିକତାର 'ହଲ୍‌ୱାର ମନୁମେଣ୍ଟ' ଥିଲା ବ୍ରିଟିଶ-ବିରୋଧୀ ବଙ୍ଗର ଶେଷ ସ୍ୱାଧୀନ ଶାସକ ନବାବ୍ ସିରାଜ୍ ଉଦ୍ଦୌଲାଙ୍କ ପ୍ରତି ଏକ ଅପମାନ । ତାକୁ ଭାଙ୍ଗିବା ପାଇଁ ଜୁଲାଇ ୩ ତାରିଖକୁ 'ସିରାଜ୍ ଉଦ୍ଦୌଲା ଦିବସ' ରୂପେ ପାଳନ କରିବାକୁ ସୁଭାଷବାବୁ ଡାକରା ଦେଲେ । ଜୁଲାଇ ୨ ତାରିଖରେ ସରକାର ତାଙ୍କୁ ଗିରଫ କରି ପ୍ରେସିଡେନ୍ସି ଜେଲ୍‌ରେ ଅଟକ କରି ରଖିଲେ । ପରେ ସରକାର ନିଜେ ସେ 'ମନୁମେଣ୍ଟ' ଭାଙ୍ଗିଲେ ।

## (୨୭)

# ପାକିସ୍ଥାନ ଗଠନ ପ୍ରସ୍ତାବ

୧୯୪୦ ମସିହାରେ ମୁସଲିମ୍ ଲିଗ୍‌ର ଲାହୋର ଅଧିବେଶନରେ 'ପାକିସ୍ଥାନ ଗଠନ' ପ୍ରସ୍ତାବ ଗୃହୀତ ହୋଇଥିଲା । ଫଜ୍‌ଲୁଲ୍ ହକ୍ ଏହି ପ୍ରସ୍ତାବ ଆଗତ କରିଥିଲେ ।

୧୯୦୬ ମସିହାରେ ମୁସଲିମ୍-ଲିଗ୍ ଗଠିତ ହୋଇଥିଲା । ବଙ୍ଗ ବିଚ୍ଛେଦ ଆନ୍ଦୋଳନବେଳେ ହିନ୍ଦୁ-ମୁସଲମାନ ବିଭେଦ ସୃଷ୍ଟି ପାଇଁ ବ୍ରିଟିଶ ସରକାରଙ୍କ ଇଙ୍ଗିତରେ ଢାକାରେ ଏହା ଗଠିତ ହୋଇଥିଲା । ୧୯୩୦ ମସିହାରେ ଲିଗ୍ ସଭାପତି ମହମ୍ମଦ ଇକ୍‌ବଲ ଭାରତର ମୁସଲମାନ ଅଞ୍ଚଳକୁ ଏକତ୍ର କରିବା ଉପରେ ଗୁରୁତ୍ୱ ଆରୋପ କରି ଜିନ୍ନା ସାହେବଙ୍କୁ ପତ୍ର ଲେଖିଥିଲେ । ୧୯୩୪-୩୫ ମସିହାରେ ଲଣ୍ଡନରେ ପଢୁଥିବା କେତେକ ମୁସଲମାନ ଛାତ୍ର ପ୍ରଥମେ 'ପାକିସ୍ଥାନ' ଶବ୍ଦ ବ୍ୟବହାର କରିଥିଲେ । ପଞ୍ଜାବ, ଆଫଗାନ ପ୍ରଦେଶ, କାଶ୍ମୀର, ସିନ୍ଧ ଓ ବେଲୁଚିସ୍ଥାନକୁ ନେଇ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ ହେବା ଉଚିତ ବୋଲି ସେମାନେ ମତପ୍ରକାଶ କରିଥିଲେ । କିନ୍ତୁ ଗୋଲଟେବୁଲ ବୈଠକରେ ଯୋଗଦେଇଥିବା ମୁସଲମାନ ନେତୃବୃନ୍ଦ ଏହି ଦାବିକୁ କୌଣସି ଗୁରୁତ୍ୱ ଦେଇନଥିଲେ ।

ପ୍ରଥମ ମହାଯୁଦ୍ଧବେଳେ ଜିନ୍ନା ସାହେବ କଂଗ୍ରେସ ଅଧିବେଶନରେ ଯୋଗ ଦେଉଥିଲେ । ସେ 'ହିନ୍ଦୁ-ମୁସଲମାନ ଏକତାର ଦୂତ' ବୋଲି ସରୋଜିନୀ ନାଇଡୁ କହିଥିଲେ । କିନ୍ତୁ ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନକୁ ନାପସନ୍ଦ କରି ସେ କଂଗ୍ରେସଠାରୁ ଦୂରେଇଗଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳକୁ ପ୍ରତିପତ୍ତିବିହୀନ ଜିନ୍ନା ସାହେବ ବ୍ରିଟିଶ ସରକାରଙ୍କ ସହାୟତାରେ ପୁଣି ନିଜ ସ୍ଥିତିକୁ ସୁଦୃଢ଼ କଲେ । ଦୁଇଟି କଥା ତାଙ୍କୁ ସାହାଯ୍ୟ କଲା । ଗାନ୍ଧିଜୀ ଜିନ୍ନା ସାହେବଙ୍କୁ କୁଆଦି-ଆଜାମ୍ (ସର୍ବୋଚ୍ଚ ନେତା) ନାମରେ ଅଭିହିତ କରି ଥରକୁଥର ତାଙ୍କ ସାଙ୍ଗେ ଆଲୋଚନା ପାଇଁ ଆଗ୍ରହ ପ୍ରକାଶ କରିବାଦ୍ୱାରା ମୁସଲମାନ ସଂପ୍ରଦାୟ ତାଙ୍କୁ ନେତାରୂପେ ଓ ବ୍ରିଟିଶ ସରକାର ତାଙ୍କୁ ଲିଗ୍‌ର ମୁଖପାତ୍ର ରୂପେ ସ୍ୱୀକାର କଲେ ବୋଲି ମୌଲାନା ଆଜାଦ୍ 'India Wins Freedom' ପୁସ୍ତକରେ ଲେଖିଛନ୍ତି । ୧୯୩୭ ମସିହା ନିର୍ବାଚନ ପରେ କଂଗ୍ରେସ ଯଦି ପଞ୍ଜାବ, ସିନ୍ଧ, ବଂଗ ଓ ଉତ୍ତରପ୍ରଦେଶରେ ମୁସଲମାନ ନେତାଙ୍କ ସହିତ ସଂପର୍କ ସ୍ଥାପନ କରିଥାନ୍ତା, ତେବେ ଲିଗ୍ ମୂଳପୋଛ ହୋଇଯାଇଥାନ୍ତା ବୋଲି ବହୁ ଐତିହାସିକ ମତ ପ୍ରକାଶ କରିଛନ୍ତି । ଶେଷରେ କଂଗ୍ରେସର ତୁଙ୍ଗନେତା ରାଜଗୋପାଳାଚାରୀ ଓ କମ୍ୟୁନିଷ୍ଟ-ପାର୍ଟିର 'ପାକିସ୍ଥାନ ପ୍ରସ୍ତାବ'କୁ ସମର୍ଥନ ଜିନ୍ନା ସାହେବଙ୍କ ଆସନକୁ ସୁଦୃଢ଼ କରିଦେଲା ।

(୨୮)

## ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ

ଧର୍ମଘଟ, ଜେଲ, ମକଦ୍ଦମାରେ ବ୍ୟସ୍ତ ହୋଇ ବହୁଦିନ ହେଲା ଘରକୁ ଯାଇ ନଥିଲି । ବୋଉ ଅଧୈର୍ଯ୍ୟ ହୋଇପଡ଼ିଲା । ମୁଁ ପୁରୀ ଗଲି । ଭାବିଲି ନନା କ'ଣ କହିବେ ? ମୁଁ ପରୀକ୍ଷା ଦେଲି ନାହିଁ, ମୋର ଜଣେ ଭାଇନା ମଧ ପରୀକ୍ଷା ଦେଇପାରିଲେ ନାହିଁ । ଆଉ ଜଣେ ଭାଇନା ଚାକିରି ପାଇଁ ମନୋନୀତ ହୋଇଥିଲେ ମଧ ମୋର କାର୍ଯ୍ୟକଳାପ ଯୋଗୁ ତାହା ହରାଇଲେ । ମୋତେ ଦେଖି ନନା, ବୋଉ, ଭାଇଭଉଣୀ ଭାରି ଖୁସି ହେଲେ । ମୁଁ ଝଡ଼ିଯାଇଛି ବୋଲି ବୋଉ କାନ୍ଦିଲା । କୌଣସି ପ୍ରଶ୍ନ ନାହିଁ, ଆଶ୍ୱସ୍ତ ହେଲି ।

ପୁରୀରେ ରହିଲାବେଳେ 'ମାଟ୍ରିକୁଲେସନ ଇତିହାସ' ନାମରେ ଗୋଟିଏ ବହି ଲେଖିଲି– ପାଟନା ବିଶ୍ୱବିଦ୍ୟାଳୟର ଗତ କେତେବର୍ଷର ପ୍ରଶ୍ନର ଉତ୍ତର । ନନା ତାହାର ପ୍ରକାଶକ ହେଲେ ଓ କଟକ ନବଭାରତ ପ୍ରେସ୍‌ରେ ତାହା ମୁଦ୍ରିତ ହେଲା । ବେଳେବେଳେ ଗଳ୍ପ ଓ ପ୍ରବନ୍ଧ ଲେଖୁଥିଲି । ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂପାଦନାରେ ପ୍ରକାଶିତ ମାସିକ 'ନବଭାରତ' ପତ୍ରିକାରେ ତାହା ପ୍ରକାଶିତ ହୋଇଥିଲା ।

ସେତିକିବେଳେ ନିଖିଳ ଭାରତ ଫରୱାର୍ଡ଼ ବ୍ଲକ୍‌ର ସଂପାଦକ ମୁକୁନ୍ଦଲାଲ ସରକାର ପୁରୀ ଆସି ଲାଲମୋହନ ହୋଟେଲରେ ରହିଲେ । ସମୁଦ୍ରକୂଳରେ ଦୁଇ ଦିନି ବଖରା ଚାଳଘରେ ହୋଟେଲ, ୪-୬ ଖଣ୍ଡ ଖଟିଆ ପଡ଼ିଥାଏ । ଲାଲମୋହନଦା ଖଦଡ଼ ପିନ୍ଧୁଥିଲେ । ସେ ଭାରି ମେଳାପୀ ଥିଲେ । ମୋ ଜାଣିବାରେ ପୁରୀରେ ତାହା ପ୍ରଥମ ହୋଟେଲ । ଏବେ ସେଠି ପକ୍କାଘର ହୋଇଗଲାଣି । ହୋଟେଲ ଆଉ ନାହିଁ ।

ମୁକୁନ୍ଦବାବୁ ୧୯୦୫ ମସିହା ବଙ୍ଗବିଚ୍ଛେଦ ଆନ୍ଦୋଳନରେ ଭାଗ ନେଇଥିଲେ । ୧୯୨୦ ମସିହାରେ ଲାଲା ଲଜ୍‌ପତ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ ନିଖିଳ ଭାରତ ଟ୍ରେଡ଼ ଇଉନିୟନ୍ କଂଗ୍ରେସର ସାଧାରଣ ସଂପାଦକ ଓ ୧୯୨୨ ମସିହାରେ ବଙ୍ଗ ପ୍ରାଦେଶିକ ଟ୍ରେଡ଼ ଇଉନିୟନ୍‌ର ପ୍ରତିଷ୍ଠାତାମାନଙ୍କ ମଧରେ ସେ ଅନ୍ୟତମ । ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ଦୀର୍ଘ ୧୩ବର୍ଷ କାରାଦଣ୍ଡ ଭୋଗିଥିଲେ । ପୁରୀରେ ଥିବା ସମୟରେ 'ଗଣଆନ୍ଦୋଳନ୍' ବିଷୟରେ ଗାନ୍ଧିଜୀଙ୍କ ସହିତ ପତ୍ରାଳାପ କରୁଥିଲେ । ମୁଁ ପ୍ରାୟ ତାଙ୍କ ପାଖରେ ରହୁଥିଲି । ବଡ଼ଭାଇ ସାନଭାଇର ଘନିଷ୍ଠତା ହୋଇଗଲା । ସୁଭାଷବାବୁଙ୍କ ଧ୍ୟାନ ପରେ ବହୁକାଳ ଗିରଫ ୱାରେଣ୍ଟକୁ ଏଡ଼ି ଆତ୍ମଗୋପନ କରି ସେ ରହିଥିଲେ । ୧୯୪୩ ମସିହା ମଇ ମାସରେ ହଠାତ୍ ଦିନେ ରାତିଅଧରେ ବାବାଜି

ବେଶରେ ଆମ ପୁରୀଘରେ ପହଁଚିଲେ । ତାଙ୍କୁ ଧରାଇଦେବା ବ୍ୟକ୍ତି ଦଶହଜାର ଟଙ୍କା ପୁରସ୍କାର ପାଇବ ବୋଲି ସରକାରୀ ଘୋଷଣାନାମା ପ୍ରକାଶିତ ହୋଇସାରିଥାଏ । ସେତେବେଳକୁ ଜେଲ୍‌ରୁ ଖଲାସ ହୋଇ ପୁରୀରେ ମୁଁ ଫରଓ୍ୱାର୍ଡ଼ ବ୍ଲକର ଗୁପ୍ତ ସଂଗଠନର ଦାୟିତ୍ୱରେ ଥାଏ । ପୁଲିସର କଡ଼ାନଜର । ପ୍ରଥମ ଚିନ୍ତା ହେଲା ସେ ରହିବେ କେଉଁଠି ? ଡୋଡଆଲା-ଧର୍ମଶାଳାର ତଳ କୋଠରିରେ ବହୁତ ବାବାଜି ରହୁଥିଲେ— ସେଠି ତାଙ୍କୁ ଛାଡ଼ି ଆସିଲି । ପୁରୀର ଗୁଇନ୍ଦା ବିଭାଗ ଇନ୍ସପେକ୍ଟର ରାଜଗୋବିନ୍ଦ ବୋଷ ସବୁବେଳେ ମୋ ଉପରେ ନଜର ରଖିଥାନ୍ତି । ଦୁଇଦିନ ଭିତରେ ବଡ଼ କଷ୍ଟରେ ମୁକୁନ୍ଦବାବୁଙ୍କ ସହିତ ମୋର ଚାରିଥର ଦେଖା ଓ ଆଲୋଚନା ହୋଇଛି । ତୃତୀୟଦିନ ବେଳକୁ କ'ଣ ଗୋଟାଏ ଚାଲିଛି ବୋଲି ରାଜଗୋବିନ୍ଦବାବୁଙ୍କର ସନ୍ଦେହ ହୋଇଗଲାଣି । ମୁଁ ସକାଳେ ଘରୁ ବାହାରିଲା ବେଳକୁ ସେ ଆମ ଦାଣ୍ଡଘରେ ବସିଛନ୍ତି । 'କୁଆଡ଼େ ବାହାରିଛନ୍ତି' ବୋଲି ପଚାରିଲେ, ମୁଁ କହିଲି— 'ଏମିତି' । ଆମ ଘରପାଖେ ସେ ଗୋଟିଏ ଭଡ଼ାଘରେ ରହୁଥିଲେ । କ୍ୟାରମ୍ ଖେଳିବାପାଇଁ ମୋତେ ତାଙ୍କ ଘରକୁ ଡାକିଲେ । ସେଠି ପହଞ୍ଚିବା ମାତ୍ରେ 'ମୁଁ ଟିକିଏ ଆସୁଛି' ବୋଲି କହି ଘର ଭିତରେ ପଶିଗଲେ । ଉପର ଘରେ ଗୁଇନ୍ଦା ବିଭାଗର କେତେକ କର୍ମଚାରୀ ଦାଦାଙ୍କୁ ଅପେକ୍ଷା କରିଛନ୍ତି ବୋଲି ତାଙ୍କ ଭଉଣୀଙ୍କଠାରୁ ଶୁଣିଲି । ମୁଁ ଉପରକୁ ଉଠିଲି— ଦୁଆର ଆଉଜା ହୋଇଛି । ଫୁସୁରୁଫୁସୁରୁ କଥା ଶୁଣାଯାଉଛି, ଦୁଆରମୁହଁରେ ତାଲା ଝୁଲୁଛି । ତାହା ଟିପିଦେଇ ମୁଁ ଓହ୍ଲାଇ ଆସି ଧର୍ମଶାଳାରେ ପହଁଚିଲାବେଳକୁ ମୁକୁନ୍ଦବାବୁ ଅସୁସ୍ଥ । ସାଙ୍ଗେ ସାଙ୍ଗେ ପୁରୀ ଛାଡ଼ି ଚାଲିଯିବା ଛଡ଼ା ଅନ୍ୟ ଉପାୟ ନାହିଁ । ତାଙ୍କ କହିବା ଅନୁଯାୟୀ, ଢାକା ଆୟୁର୍ବେଦ ଫାର୍ମାସିର କବିରାଜଙ୍କୁ ଡାକିଆଣିଲି । ସେ ମୁକୁନ୍ଦବାବୁଙ୍କ ପୂର୍ବପରିଚିତ । ସେ ମୁକୁନ୍ଦବାବୁଙ୍କୁ ସାଇକେଲ୍ ପଛରେ ବସାଇନେଇ ମାଳତୀପାଟପୁର ଷ୍ଟେସନରେ ରେଳଗାଡ଼ିରେ ଚଢ଼ାଇଦେଲେ ।

୧୯୪୨ ମସିହା ଅଗଷ୍ଟ-ଆନ୍ଦୋଳନରେ ମୁଁ ପୁଣି ଗିରଫ ହୋଇ ଜେଲ୍‌ରେ ରହିଲି । ପ୍ରାୟ ସେତିକିବେଳକୁ ମୁକୁନ୍ଦବାବୁ ବମ୍ବେରେ ଗିରଫ ହେଲେ ।

ତା'ର କେତେବର୍ଷ ପରେ । ମୁକୁନ୍ଦବାବୁଙ୍କଠାରୁ ଖଣ୍ଡେ ଚିଠି ପାଇଲି । ସେ ଗୁରୁତର ଅସୁସ୍ଥ ହୋଇ ବମ୍ବେର ଗୋଟିଏ ଡାକ୍ତରଖାନାରେ ଅଛନ୍ତି । ଘୋର ଅଭାବ, ସୁଭାଷ ବୋଷଙ୍କ ବିଷୟରେ ବହି ଲେଖିଛନ୍ତି, ମୋ ପାଖକୁ ବିକ୍ରି ପାଇଁ କେତେଖଣ୍ଡ ପଠାଉଛନ୍ତି । ମୋ ପାଖରେ ତାହା ପହଁଚିବା ପୂର୍ବରୁ ତାଙ୍କ ପରଲୋକ ସଂବାଦ ପଢ଼ିଲି ।

(୨୯)

## ବି.ଏ. ପରୀକ୍ଷାନିମନ୍ତେ ପ୍ରସ୍ତୁତି

୧୯୪୧ ମସିହା ବି.ଏ. ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହେବାପାଇଁ କଟକକୁ ଆସିଲି । ରେଭେନ୍ସା କଲେଜ ହତା ମାଡ଼ିପାରିବିନାହିଁ– ମୋ ଉପରେ ସରକାରୀ ନିଷେଧାଜ୍ଞା ଜାରୀ ହୋଇଥାଏ । ପଶ୍ଚିମ ଛାତ୍ରାବାସର ଭାଇମାନଙ୍କ ଅନୁରୋଧକ୍ରମେ ସେଠି କିଛିଦିନ ରହିଲି । ସୁପରିଟେଣ୍ଡେଣ୍ଟ ଅଧ୍ୟାପକ ବାମାଚରଣ ଦାସଙ୍କ ସହିତ ପ୍ରାୟ ପ୍ରତ୍ୟେକ ଦିନ ଦେଖାହୁଏ । ସାବଧାନରେ ରହିବାକୁ ସେ ମୋତେ ସତର୍କ କରାଇ ଦେଇଥିଲେ ।

ଦିନେ ରାସ୍ତାରେ ମୁଁ ଗଲାବେଳେ ଚିଫ୍ ସେକ୍ରେଟାରୀ ମାନ୍‌ସଫିଲଡ୍ ସାହେବ ଯାଉଥିଲେ । ଗାଡ଼ି ଅଟକାଇ 'କୁଆଡ଼େ ଯାଉଛ' ବୋଲି ମୋତେ ପଚାରିଲେ । 'ଆପଣ କ'ଣ ମୋତେ ଗିରଫ କରିବେ' ? ବୋଲି ମୁଁ ପଚାରିବାରେ 'ମୁଁ ପୁଲିସ ନୁହେଁ' ବୋଲି କହି ସେ ମୋତେ ତାଙ୍କ ଗାଡ଼ିରେ ବସାଇ କଲେଜ ଫାଟକ ଦୁଆର ପାଖରେ ଛାଡ଼ି ଦେଇଗଲେ । ଘରୁ ଆଉ ପଇସା ଆଣିବୁ ନାହିଁ ବୋଲି ନିଷ୍ପତ୍ତି କରି ମୁଁ ସୁରଜ୍ ଗୁଜରାଟି ବସ୍ତିରେ ଦୁଇବଖରା ଘରେ ମାସିକ ୧୨ଟଙ୍କା ଭଡ଼ାରେ ରହିଲୁ । ତିନୋଟି ଗୁଜରାଟି ଛାତ୍ରଙ୍କୁ ଟିଉସନ୍ କରି ମାସିକ ୫୫ଟଙ୍କା ମିଳିଲା– ସେତେବେଳକୁ ତାହିଁ ତାହା ଯଥେଷ୍ଟ । ମଧୁସୂଦନ ମହାନ୍ତିଙ୍କ ଅନୁରୋଧକ୍ରମେ ତାଙ୍କ ସଂପାଦନାରେ ପ୍ରକାଶିତ 'ଅବ୍‌ଜରଭର' ନାମକ ଇଂରେଜୀ ସାପ୍ତାହିକ ପତ୍ରିକାରେ ମୁଁ ୨ମାସ ସଂପାଦକ ଦାୟିତ୍ୱ ତୁଲାଇଲି ।

ଜର୍ମାନୀ ମାଡ଼ିଚାଲିଛି ଆଗକୁ, ଲଣ୍ଡନ ଉପରେ ଘନଘନ ବୋମାମାଡ଼ ଚାଲିଛି । ତଥାପି ଭାରତର ସ୍ୱାଧୀନତା ଘୋଷଣା କରିବାକୁ ବ୍ରିଟିଶ ସରକାର ନାରାଜ । ଏପରି ଅବସ୍ଥାରେ ଏକ ରାଜନୀତିକ ଅନୁଷ୍ଠାନ ରୂପେ କଂଗ୍ରେସ ନୀରବ ହୋଇ ବସିନପାରେ । ଗାନ୍ଧିଜୀ 'ବ୍ୟକ୍ତିଗତ ସତ୍ୟାଗ୍ରହ' ଆନ୍ଦୋଳନ ଆରମ୍ଭ କରିବାକୁ ଡାକରା ଦେଲେ । ବ୍ରିଟିଶ ସରକାରଙ୍କ ମତିଗତି ବିରୁଦ୍ଧରେ ଏହା ଥିଲା ଏକ ନୈତିକ ପ୍ରତିବାଦ । କେବଳ ମନୋନୀତ କଂଗ୍ରେସ ସଭ୍ୟ ସତ୍ୟାଗ୍ରହୀଗଣ ସରକାରଙ୍କୁ ନୋଟିସ ଦେଲାପରେ ଯୁଦ୍ଧବିରୋଧୀ ଧ୍ୱନିଦେଇ ଗିରଫ ହୋଇ କାରାବରଣ କରିବେ– ଏହା ଥିଲା କର୍ମଯୋଜନା । ପ୍ରଥମ ସତ୍ୟାଗ୍ରହୀ ଆଚାର୍ଯ୍ୟ ବିନୋବା ବାଭେ । ସେ ୧୯୪୩ ମସିହା ଅକ୍ଟୋବର ୧୭ ତାରିଖରେ କାରାବରଣ କରିଥିଲେ । ଦ୍ୱିତୀୟ ସତ୍ୟାଗ୍ରହୀ ଥିଲେ ପଣ୍ଡିତ ଜବାହରଲାଲ ନେହୁରୁ । ଏହି ସତ୍ୟାଗ୍ରହରେ ସମଗ୍ର ଦେଶରୁ

୨୦ହଜାରରୁ ଊର୍ଦ୍ଧ୍ୱ ସତ୍ୟାଗ୍ରହୀ କାରାବରଣ କରିଥିଲେ, କିନ୍ତୁ ଏହାର କୌଣସି ପ୍ରଭାବ ବ୍ରିଟିଶ ସରକାରଙ୍କ ଉପରେ ପଡ଼ିନଥିଲା । ବ୍ରିଟିଶ ସାମ୍ରାଜ୍ୟର ପ୍ରଧାନ 'ମଣି' ଥିଲା ଭାରତ, ତାକୁ କେବେହେଲେ ଛାଡ଼ିହେବନାହିଁ ବୋଲି ଜାଠ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ସାହେବ ଦୃଢ଼ ଘୋଷଣା କଲେ ।

ଓଡ଼ିଶା ବିଧାନସଭା ସଭ୍ୟ ବନ୍ଧୁ ପ୍ୟାରୀଶଙ୍କର ରାୟ କଟକ ମାଲଗୋଦାମରେ ଯୁଦ୍ଧ-ବିରୋଧୀ ଧ୍ୱନି ଦେଇ ଗିରଫ ହେଲେ । ମୁଁ ତାଙ୍କ ସହିତ କଟକ ଜେଲ ଫାଟକ ପର୍ଯ୍ୟନ୍ତ ଯାଇଥିଲି । ବିଚାରରେ ତାଙ୍କୁ ୬ମାସ ଜେଲଦଣ୍ଡ ଓ ୧୦୦ଟଙ୍କା ଜୋରିମାନା ହେଲା । ଜୋରିମାନା ନ ଦେବାରୁ ତାଙ୍କ ଘରର ବାସନକୁସନ ପର୍ଯ୍ୟନ୍ତ ସବୁ ଜିନିଷ ମାଜିଷ୍ଟ୍ରେଟଙ୍କ ଉପସ୍ଥିତିରେ ପୁଲିସ ଉଠାଇନେଲେ । ତାଙ୍କ ପରିବାରବର୍ଗଙ୍କ ସମେତ ମୁଁ ନୀରବଦ୍ରଷ୍ଟା ହୋଇ ଛିଡ଼ାହୋଇଥିଲୁ ।

## (୩୦)

## ଜେଲ୍‌ରେ ସୁଭାଷବୋଷ

ପ୍ରେସିଡେନ୍ସି ଜେଲରେ ସୁଭାଷ ବୋଷ ଚିନ୍ତାରତ । ଜର୍ମାନୀର ପ୍ରଚଣ୍ଡ ଆକ୍ରମଣରେ ବ୍ରିଟିଶ ସରକାର ଭୟଭୀତ, ଇତସ୍ତତଃ । ସ୍ୱାଧୀନତା ହାସଲ କରିବାର ପ୍ରକୃଷ୍ଟ ସମୟ ହାତଛଡ଼ା ହୋଇଯାଉଛି । ବ୍ରିଟିଶ ସରକାରର ଶତ୍ରୁ ଭାରତର ମିତ୍ର । ସେମାନଙ୍କ ସାହାଯ୍ୟରେ ସଶସ୍ତ୍ର ଆକ୍ରମଣ ସ୍ୱାଧୀନତା ହାସଲର ଏକମାତ୍ର ପନ୍ଥା ବୋଲି ତାଙ୍କ ମତକୁ ଗାନ୍ଧିଜୀ ଗ୍ରହଣ କରିବାକୁ ନାରାଜ । ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନକୁ ଗଣଆନ୍ଦୋଳନରେ ପରିଣତ କରିବାକୁ ତାଙ୍କ ପ୍ରସ୍ତାବକୁ ଗାନ୍ଧିଜୀ ପ୍ରତ୍ୟାଖ୍ୟାନ କଲେ । କେବଳ ସମାଜବାଦୀ ଦଳର ନେତା ଜୟପ୍ରକାଶ ନାରାୟଣ ଗଣଆନ୍ଦୋଳନ ବିଷୟରେ ତାଙ୍କ ସହିତ ଏକମତ ହୋଇ ୧୯୪୦ ମସିହା ଶେଷଭାଗରେ ତାଙ୍କ ପାଖକୁ ଗୋଟିଏ ଗୁପ୍ତ ପତ୍ର ଲେଖିଥିଲେ । ତା'ର ସାରମର୍ମ ହେଲା– କଂଗ୍ରେସର କାର୍ଯ୍ୟକ୍ରମକୁ ଆଉ ଅପେକ୍ଷା କରିହେବ ନାହିଁ । ସାମ୍ରାଜ୍ୟବାଦର ବିଲୋପ ଏବଂ ଗଣତନ୍ତ୍ର ଶାସନର ପ୍ରତିଷ୍ଠାର ଦାୟିତ୍ୱ ହେଉଛି ଚାଷୀ, ମୂଲିଆ ଏବଂ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର । କଂଗ୍ରେସ ସମାଜବାଦୀ ଦଳ, ଫରୱାର୍ଡ଼-ବ୍ଲକ, ଅନୁଶୀଳନ ସଂଗଠନ ଓ ସୀମାନ୍ତର କୀର୍ତ୍ତି କିଶାନ୍ ଦଳଙ୍କୁ ଏକାଠି କରି ଗୋଟିଏ ନୂତନ ବିପ୍ଳବୀ ଦଳ ସଂଗଠିତ କରିବାକୁ ଉଦ୍ୟମ ହେଉ । ଏହା କେବଳ ବୋଷଙ୍କ ନେତୃତ୍ୱରେ ସମ୍ଭବ ହେବ ।

ଯୁଦ୍ଧ ଶେଷ ହେବା ପୂର୍ବରୁ ସରକାର ତାଙ୍କୁ ଖଲାସ କରିବେ ନାହିଁ ବୋଲି ସେ ଜାଣିଥିଲେ । ଭାରତରୁ ଲୁଚି ପଳାଇଯାଇ ବ୍ରିଟିଶ ସରକାରର ଶତ୍ରୁଙ୍କ ସାହାଯ୍ୟରେ ସଶସ୍ତ୍ର ସଂଗ୍ରାମ କରିବାକୁ ସେ ସ୍ଥିର କଲେ । ୧୯୩୮ ମସିହାଠାରୁ ସେ ଜର୍ମାନୀ ଓ ଜାପାନର କେତେକ ରାଜନୀତିକ ମୁଖ୍ୟଙ୍କ ସହିତ ସଂପର୍କ ସ୍ଥାପନ କରିଥିଲେ । ତାଙ୍କ ନିର୍ଦ୍ଦେଶକ୍ରମେ ଫରଓ୍ୱାର୍ଡ଼-ବ୍ଲକର ସାଧାରଣ ସଂପାଦକ ଲାଲା ଶଙ୍କରଲାଲ 'ହୀରାଲାଲ ଗୁପ୍ତ' ଛଦ୍ମନାମ ନେଇ ପାସ୍‌ପୋର୍ଟ କରି କଲିକତାରୁ ଏକ ଜାପାନୀ ଜାହାଜରେ ଜାପାନ ଯାଇ ବିପ୍ଳବୀ ରାସବିହାରୀ ଘୋଷ ଓ ଜାପାନର କର୍ମକର୍ତ୍ତାଙ୍କ ସହିତ ଆଲୋଚନା କରିଥିଲେ । ବ୍ରିଟିଶ ସରକାର ତାହା ଜାଣିପାରି ତାଙ୍କୁ ଗିରଫ କରିଥିଲେ ।

ପ୍ରଥମେ ଜେଲ୍‌ରୁ ଖଲାସ ହେବାକୁ ହେବ କିପରି ? ତାଙ୍କୁ ଖଲାସ କରାନଗଲେ ସେ ଆମରଣ ଅନଶନ କରିବେ ବୋଲି ଧମକ ଦେଇ ଲାଟସାହେବଙ୍କୁ ପତ୍ର ଲେଖିଲେ । ତାହା ଥିଲା ଏକ ଐତିହାସିକ ପତ୍ର– ''ମରଣ ମୋତେ କେବେ ଭୟଭୀତ କରିପାରି ନାହିଁ– ବଂଚିବି କି ମରିବି ତାହା ମୋର ବ୍ୟକ୍ତିଗତ ନିଷ୍ପତ୍ତି ଉପରେ ନିର୍ଭର କରେ । ମରଜଗତରେ ସବୁ ଲୋପ ପାଇଯାଏ ଓ ପାଇବ, କିନ୍ତୁ ଆଦର୍ଶ ଓ ସ୍ୱପ୍ନର ମୃତ୍ୟୁ ନାହିଁ । କୌଣସି ତ୍ୟାଗ ନିରର୍ଥକ ନୁହେଁ । ଅନ୍ୟାୟ ସହିତ ସାଲିସ ମହାପାପ । ଜୀବନ ପାଇବାକୁ ହେଲେ ତାହା ବଳିଦେବାକୁ ପଡ଼ିବ ।''

ନଭେମ୍ବର ୨୯ ତାରିଖରେ ସେ ଅନଶନ ଆରମ୍ଭ କରିବେ ବୋଲି ଲେଖିଥିଲେ ଏବଂ ତଦନୁଯାୟୀ ସେହିଦିନ ତାଙ୍କ ଅନଶନ ଆରମ୍ଭ ହେଲା । ସରକାର ତ୍ରସ୍ତ ହୋଇପଡ଼ିଲେ– ଭୟ ଯେ ବୋଷଙ୍କର କିଛି ହୋଇଗଲେ ଦେଶବ୍ୟାପୀ ଆନ୍ଦୋଳନ ହୋଇଯିବ । ଅନଶନର ଛ'ଦିନପରେ ତାଙ୍କୁ ଖଲାସ କରିଦିଆଗଲା ଓ ଅଟକବନ୍ଦୀ ରୂପେ ସେ ନିଜର ଏଲ୍‌ଗିନ୍-ରୋଡ଼ ବାସଭବନରେ ରହିଲେ । ଭାରତରୁ ଖସି ପଳାଇବାର ଯୋଜନା ସ୍ଥିରହୋଇଗଲା ।

ତଦନୁଯାୟୀ ୧୯୪୧ ମସିହା ଜାନୁଆରୀ ୧୬ତାରିଖ ମଧ୍ୟରାତ୍ରରେ ଛଦ୍ମବେଶ ଧାରଣ କରି 'ମହମ୍ମଦ ଜିଆଉଦ୍ଦୀନ' ଛଦ୍ମନାମରେ ତାଙ୍କ ପୁତୁରା ଶିଶିର ବୋଷଙ୍କ ସହିତ ମଟରଗାଡ଼ିରେ ଧାନବାଦ ଗଲେ । ଶିଶିରଙ୍କ ଭାଇ ଅଶୋକ ସେଠାରେ ରହୁଥିଲେ । ସେମାନେ ତାଙ୍କୁ ଗୋମୋ ରେଳଷ୍ଟେସନକୁ ନେଇ ଦିଲ୍ଲୀ-କାଲ୍‌କା ମେଲରେ ଚଢ଼ାଇଦେଲେ । ଦିଲ୍ଲୀ ନିକଟବର୍ତ୍ତୀ ଏକ ଷ୍ଟେସନରେ ଓହ୍ଲାଇ ସେ ଫ୍ରଂଟିଅର-ମେଲ୍ ଚଢ଼ି ପେଶାଓ୍ୱାର ଗଲେ । ତାଙ୍କ ସହିତ ଗଲେ ଫରଓ୍ୱାର୍ଡ଼-ବ୍ଲକ୍‌ର କାର୍ଯ୍ୟକାରୀ କମିଟିର ସଭ୍ୟ ମିଆଁ ଆକବର ସାହା । ପେଶଓ୍ୱାର୍‌ରୁ କାବୁଲ ପର୍ଯ୍ୟନ୍ତ ତାଙ୍କୁ ନେବାର ଦାୟିତ୍ୱ ଥିଲା ଯୁବକ ଭଗତରାମ ଟାଲଓ୍ୱାରଙ୍କର । ତାଙ୍କ ପରିବାର ଆଫଗାନିସ୍ଥାନରେ ରହୁଥିଲେ ଓ ସେ ସ୍ଥାନୀୟ ଭାଷା ଜାଣିଥିଲେ । ତାଙ୍କର ଜଣେ

ଭାଇଙ୍କୁ ବ୍ରିଟିଶ ସରକାର କେତେବର୍ଷ ପୂର୍ବରୁ ଫାଶୀ ଦେଇଥିଲେ । ଭଗତରାମ କୀର୍ତ୍ତିକିଶାନ୍ ପାର୍ଟି ସହିତ ସଂପୃକ୍ତ ଥିଲେ । ପୂରା ପଠାଣ ବେଶରେ, ମୂକ ଓ ବଧିର ବୋଲି ଛଳନା କରି ଭଗତରାମଙ୍କ ସହିତ ସେ କାବୁଲରେ ପହଁଚି ଇଟାଲୀ ଓ ଜର୍ମାନୀ ଦୂତାବାସ ସହିତ ସଂପର୍କ ସ୍ଥାପନ କଲେ । ଇଟାଲୀ ଦୂତାବାସ ତାଙ୍କ ପାଇଁ ଅର୍ଲାଂଡୋ ମାଜୋଟା ଛଦ୍ମନାମରେ ପାସ୍‌ପୋର୍ଟ କରିଦେଲେ । ଦୁଇଜଣ ଜର୍ମାନୀ ନାଗରିକଙ୍କ ସାହାଯ୍ୟରେ ହିନ୍ଦୁକୁଶ ପର୍ବତମାଳା ଓ ଅକ୍ସ ନଦୀ ପାରହୋଇ ସମରକନ୍ଦରେ ପହଁଚି ସେଠାରୁ ରେଳ ଯୋଗେ ମସ୍କୋରେ ପହଁଚିଲେ । ଜର୍ମାନୀ ଦୂତାବାସ ତାଙ୍କୁ ରେଳ ଯୋଗେ ଜର୍ମାନୀ ପଠାଇବାର ବ୍ୟବସ୍ଥା କରିଦେଲେ । ଏପ୍ରିଲ ମାସ ୩ ତାରିଖରେ ସେ ବର୍ଲିନ ପହଁଚିଲେ ।

## (୩୧)

## କଟକରେ ମାନବେନ୍ଦ୍ର ରାୟ

ବୋଷଙ୍କ ଅନ୍ତର୍ଦ୍ଧାନ କଥା ଜାନୁଆରୀ ୨୬ ତାରିଖରେ ଜଣାପଡ଼ିଲା । ରୁଷ ବିପ୍ଳବରେ ଲେଲିନ୍‌ଙ୍କ ସାଥୀ, ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ଅନ୍ୟତମ ତୁଙ୍ଗ ନେତା ମାନବେନ୍ଦ୍ର ରାୟ ତାଙ୍କ ସହଧର୍ମିଣୀ ଏଲେନ୍ ରାୟଙ୍କ ସହିତ ସେଦିନ କଟକରେ କଲେଜ ପାଖରେ ଥିବା ଜିଲ୍ଲା ବୋର୍ଡ଼ ଡାକବଙ୍ଗଳାରେ ରହୁଥିଲେ । ସେ ଡାକବଙ୍ଗଳା ଏବେ ନାହିଁ । ୧୯୩୯ ମସିହା ତ୍ରିପୁରୀ କଂଗ୍ରେସ ବେଳେ ସେ ସୁଭାଷ ବୋଷଙ୍କ ସମର୍ଥକ ଥିଲେ । ୧୯୪୦ ମସିହାରେ କଂଗ୍ରେସ ସଭାପତି ପଦ ସକାଶେ ମୌଲାନା ଆଜାଦଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ହାରିଥିଲେ । ୧୯୪୧ ମସିହା ବେଳକୁ ପନ୍ଥ ପରିବର୍ତ୍ତନ କରି ସେ ସରକାରଙ୍କ ଯୁଦ୍ଧ ଉଦ୍ୟମକୁ ସମର୍ଥନ କରି ଗାନ୍ଧିଜୀ, ବୋଷ ଓ ଜୟପ୍ରକାଶ ନାରାୟଣଙ୍କୁ ସମାଲୋଚନା କରି ଦେଶସାରା ବୁଲୁଥିଲେ । ସେଥିପାଇଁ ତାଙ୍କର କଟକ ଆଗମନ । ଏଥିପାଇଁ କେନ୍ଦ୍ର ସରକାରଙ୍କଠାରୁ ସେ ମାସିକ ୧୩୦୦୦ଟଙ୍କା ପାଉଥିଲେ ବୋଲି କେନ୍ଦ୍ର ଆସେମ୍ବ୍ଲିରେ ପ୍ରଶ୍ନ ଉଠିଥିଲା ।

ପ୍ରାୟ ଦିନ ୪-୫ଟା ବେଳେ ଡାକରା ପାଇ ଆମେ କେତେଜଣ ଛାତ୍ର ତାଙ୍କ ସହିତ ଆଲୋଚନା ପାଇଁ ଯାଇଥିଲୁ । ଏହି ସମୟରେ ବୋଷଙ୍କ ଅନ୍ତର୍ଦ୍ଧାନ ଖବର ସାମ୍ବାଦିକ ଏନ୍.ଆର୍.ସ୍ୱାମୀ ଦେଲେ । କିଛି ସମୟ ନୀରବ ରହିଲାପରେ 'ସୁଭାଷ ବଡ଼ ଭୁଲ୍ କଲା' ବୋଲି ସେ କହିଲେ । ସନ୍ଧ୍ୟାବେଳେ ଟାଉନ୍‌ହଲ୍ ସଭାରେ କଂଗ୍ରେସବିରୋଧୀ ଭାଷଣ ଦେଇ ସେ ପ୍ରବଳ ବିରୋଧର ସମ୍ମୁଖୀନ ହୋଇଥିଲେ ।

କୁଆଡ଼େ ଗଲେ ବୋଷ ? ଦେଶସାରା ଚହଳ ପଡ଼ିଗଲା । ଗୁଇନ୍ଦା ବିଭାଗର ତନାଘନା ତଦନ୍ତ ଚାଲିଲା । ବୋଷ ବୋଧହୁଏ ସନ୍ନ୍ୟାସୀ ହେବାପାଇଁ ନିରୁଦ୍ଦିଷ୍ଟ ହୋଇଗଲେ ବୋଲି ତାଙ୍କ ପୁତୁରା ଅରବିନ୍ଦ ବୋଷ କହିଲେ । ଗୁଇନ୍ଦା ବିଭାଗ ବିଶ୍ୱାସ ବା ଅବିଶ୍ୱାସ କରିପାରିଲେନାହିଁ, କାରଣ ତରୁଣ ବୟସରେ ବୋଷ ଥରେ ସନ୍ନ୍ୟାସୀ ହେବାପାଇଁ ଘର ଛାଡ଼ି ଚାଲିଯାଇଥିଲେ । ତାଙ୍କ ମା' ଅନବରତ କାନ୍ଦିଲେ, କିଛି ଖାଇଲେ ନାହିଁ, ସୁଭାଷକୁ ଖୋଜି ବାହାରକର ବୋଲି ସମସ୍ତଙ୍କୁ କହିଲେ— ଏ କି ପ୍ରହେଳିକା ?

ବୋଷଙ୍କ ଅନ୍ତର୍ଦ୍ଧାନ ଗାନ୍ଧିଜୀଙ୍କୁ ଖୁବ୍ ପ୍ରଭାବିତ କରିଥିଲା । ବୋଷଙ୍କ ସାହସରେ ସେ ଅଭିଭୂତ ହୋଇପଡ଼ିଲେ । ଯୁଦ୍ଧ ବିଷୟରେ ତାଙ୍କ ମନୋଭାବର ପରିବର୍ତ୍ତନ ଘଟିଲା । ସେ ସବୁବେଳେ ବୋଷଙ୍କୁ ପ୍ରଶଂସା କଲେ । ଉଡ଼ାଜାହାଜ ଦୁର୍ଘଟଣାରେ ବୋଷଙ୍କ ମୃତ୍ୟୁ ହୋଇଛି ବୋଲି ଏକ ସଂବାଦରେ ବ୍ୟଥିତ ହୋଇ ସେ ବୋଷଙ୍କ ମା'ଙ୍କ ପାଖକୁ ଶୋକପତ୍ର ଲେଖିଲେ । ସଂବାଦ ମିଥ୍ୟା ବୋଲି ଜଣାପଡ଼ିବା ପରେ ସେ ଆନନ୍ଦିତ ହୋଇଥିଲେ । ଅହିଂସାବାଦୀ ଗାନ୍ଧିଜୀଙ୍କର ହିଂସାବାଦୀ ବୋଷଙ୍କ ପ୍ରତି ଏତେ ଅନୁରାଗ କାହିଁକି ବୋଲି ମୌଲାନା ଆଜାଦ୍‌ଙ୍କ ନିକଟରେ ସାର୍ ଷ୍ଟାଫୋର୍ଡ଼ କ୍ରିପ୍‌ସ ବିରକ୍ତି ପ୍ରକାଶ କରିଥିଲେ ବୋଲି ଆଜାଦ୍ 'India Wins Freedom' ପୁସ୍ତକରେ ଲେଖିଛନ୍ତି ।

(୩୨)

## ବି.ଏ. ପରୀକ୍ଷା

ପାଟନା ବିଶ୍ୱବିଦ୍ୟାଳୟର ୧୯୪୧ ମସିହା ବି.ଏ. ଫାଇନାଲ୍ ପରୀକ୍ଷା ଦେବାକୁ ମୋତେ ଅନୁମତି ମିଳିଲା ନାହିଁ । ୧୯୪୦ ମସିହାରେ ମୁଁ କେବଳ ସେହି ବର୍ଷର ବି.ଏ. ପରୀକ୍ଷା ଦେଇପାରିବିନାହିଁ ବୋଲି ଆଦେଶ ହୋଇଥିଲା— ୧୯୪୧ ମସିହାରେ ମଧ୍ୟ ପରୀକ୍ଷା ଦେଇପାରିବି ନାହିଁ ବୋଲି ଆଦେଶ ଅଯୁକ୍ତିକର । ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ବାରିଷ୍ଟର ସଚ୍ଚିଦାନନ୍ଦ ସିଂହ । ସେ ମୋତିଲାଲ ନେହରୁଙ୍କ ବନ୍ଧୁ । 'Indian Review' ନାମକ ଏକ ମାସିକ ଇଂରେଜୀ ପତ୍ରିକାର ସଂପାଦକ ଥିଲେ । ତାଙ୍କର ପ୍ରତି ଦସ୍ତଖତରେ ଗୋଟିଏ ପରକଲମ ଭାଙ୍ଗୁଥିଲା । ତାଙ୍କୁ ସାକ୍ଷାତ କରିବାକୁ ପାଟନା ଗଲି । ମୋ କଥା ସେ ନଶୁଣିବାରୁ ତାଙ୍କ ଦୁଆରମୁହଁରେ ଅନଶନ କରିବସିଲି । ମୋ ଦାବିକୁ ସମର୍ଥନ କରି ପାଟନା ଛାତ୍ରସଂଘର ବଂଧୁଗଣ ସେଠାରେ ବିକ୍ଷୋଭ ପ୍ରଦର୍ଶନ କଲେ । ଆଦେଶର ପୁନର୍ବିଚାର ପାଇଁ ସିଣ୍ଡିକେଟ୍ ବୈଠକ ଡାକିବାକୁ କୁଳପତି ରାଜିହେଲେ । ଆମ କଲେଜର ଅଧ୍ୟାପକ ବିପିନ ବିହାରୀ ରାୟ ସିଣ୍ଡିକେଟ୍ ସଭ୍ୟଥିଲେ ।

ସପ୍ଲିମେଣ୍ଟାରୀ ପରୀକ୍ଷା ଦେବାପାଇଁ ସିଣ୍ଡିକେଟ ଅନୁମତି ଦେଲେ । ବିପିନବାବୁଙ୍କ ସହିତ କଟକ ଫେରିଲି । ପରୀକ୍ଷା ଆଉ ଅଳ୍ପ ଦିନ ଥାଏ । ପଶ୍ଚିମ ଛାତ୍ରାବାସରେ ରହି ପରୀକ୍ଷା ଦେବି ବୋଲି ସେଠି ପହଞ୍ଚିଲାବେଳକୁ ନୋଟିସ୍ ବୋର୍ଡରେ ଦେଖିଲି ଅଧ୍ୟକ୍ଷଙ୍କ ଆଦେଶ– ମୁଁ ଛାତ୍ରାବାସରେ ରହିପାରିବିନାହିଁ । ବିପତ୍ତିର ଶେଷ ନାହିଁ । ବଡ଼ ରାଗ ଲାଗିଲା । ଖରାଦିନଛୁଟି ହୋଇଥାଏ । ଛାତ୍ରାବାସରେ କେହି ନ ଥାନ୍ତି । ଗୋଟିଏ ବଖରାର ତାଲା ଭାଙ୍ଗି ପଶିଲି । ଖବର ପାଇ ଆସିଲେ ୱାର୍ଡେନ ବଳଭଦ୍ର ପ୍ରସାଦ । ମୁଁ ଠିକ୍ କରୁନାହିଁ ବୋଲି କହିଲେ । ''ଏହା ଅନ୍ୟାୟ ଆଦେଶ, ପୁଲିସ ଡାକି ମୋତେ ଗିରଫ କରନ୍ତୁ'' ବୋଲି ମୁଁ କହିବାରେ ସେ କାନ୍ଦିପକାଇଲେ । କହିଲେ, ''ତୁମେ ଆସ ମୋ ଘରେ ଅତିଥି ହୋଇ ପରୀକ୍ଷା ଦେବ, ତାହା ମନାକରିବାକୁ ଅଧ୍ୟକ୍ଷଙ୍କର କୌଣସି କ୍ଷମତା ନାହିଁ ।'' ତାଙ୍କ ଘରେ ରହି ବି.ଏ. ପରୀକ୍ଷା ଦେଲି ଓ ପାସ୍ କଲି । ତାଙ୍କର ସ୍ନେହ, ଆଦର ଓ ବଦାନ୍ୟତା କେବେହେଲେ ଭୁଲିପାରିବି ନାହିଁ ।

(୩୩)

## ପାଟନା ଆଇନ୍ କଲେଜରେ ଯୋଗଦାନ

କଲେଜର ଆଇନ୍-କ୍ଲାସ୍‌ରେ ନାମ ଲେଖାଇବା ପାଇଁ ଦରଖାସ୍ତ କଲି, କିନ୍ତୁ ଓଡ଼ିଶା ସରକାରଙ୍କ ଆଦେଶନାମା ଯୋଗୁ ମୋତେ ଅନୁମତି ମିଳିଲା ନାହିଁ । ଉପାୟ ନାହିଁ, ଅନ୍ୟ କେଉଁ ଆଇନ-କଲେଜକୁ ଯିବାକୁ ହେବ । ସେଥିପାଇଁ ଅଧ୍ୟକ୍ଷଙ୍କ ସାର୍ଟିଫିକେଟ ଆବଶ୍ୟକ । ଅଧ୍ୟକ୍ଷ ମୋତେ ଯେଉଁ ଚରିତ୍ର ସାର୍ଟିଫିକେଟ ଦେଲେ, ତାକୁ ପଢ଼ିଲେ କେଉଁଠି ହେଲେ ନାମ ଲେଖାଇବାର ପ୍ରଶ୍ନ ଉଠୁନାହିଁ । ବିଶେଷଣ-ଯୁକ୍ତ ଲମ୍ବା ସାର୍ଟିଫିକେଟ । ଡି.ପି.ଆଇ. ତ୍ରିପାଠୀ ସାହେବଙ୍କୁ ଦେଖାକଲି । ସେ ମୋତେ ଖୁବ୍ ସୁଖପାଉଥିଲେ । ତାଙ୍କର ବନ୍ଧୁ ପାଟଣା ଆଇନ କଲେଜର ଅଧ୍ୟକ୍ଷ ଡକ୍ଟର ଆଲାମଙ୍କୁ ମୋ କଥା ସୁପାରିଶ କରିବାକୁ ତାଙ୍କୁ ଅନୁରୋଧ କଲି । ନାଁ ଲେଖାଇବାର ଶେଷ ତାରିଖ ପାଖେଇଆସିଲାଣି– ସେ ସେହିଦିନ ପାଟଣା ଯାଉଥିଲେ । ମୁଁ ତାଙ୍କ ସାଙ୍ଗରେ ଗଲି । ମୋ ପାଇଁ ମଧ୍ୟ ସେ ପ୍ରଥମ ଶ୍ରେଣୀ ଟିକଟ୍ କିଣିଥିଲେ ।

ତହିଁପରଦିନ କଲେଜକୁ ଗଲି । ଡକ୍ଟର ଆଲାମଙ୍କ ଉଚ୍ଚତା ୬ ଫୁଟରୁ ବେଶୀ ହେବ । ସବୁବେଳେ ହାତରେ ହୁକା-ନଳି । ତାଙ୍କୁ ଦେଖାକଲି । ଅନ୍ୟାନ୍ୟ କାଗଜପତ୍ର ଦେଖିଲାପରେ ଚରିତ୍ର ସାର୍ଟିଫିକେଟ ମାଗିଲେ । 'ତରତରରେ ଚାଲିଆସିଲି, ସେଇଟି

ବୋଉ ପାଖରେ ରହିଯାଇଛି, ଛୁଟି ପରେ ଆଣି ଦେଖାଇବି' ବୋଲି କହିଲି । ନାଁ ଲେଖା ହୋଇଗଲା । ଛୁଟିରୁ ଫେରିବା ପରେ ମୋତେ ପୁଣି ସାର୍ଟିଫିକେଟ ମାଗିଲେ– କ'ଣ କରିବି, ବୁଦ୍ଧି ଦିଶିଲା ନାହିଁ । ହାତଯୋଡ଼ି କହିଲି– ''ସାର୍, ମୁଁ ପହଁଚିଲା ବେଳକୁ ବୋଉ ତୀର୍ଥକୁ ଚାଲିଯାଇଥିଲା, ଆଉ ଛୁଟି ପରେ ଆଣିବି'' । ଭୁଲିବା ଲୋକ ସେ ନୁହଁନ୍ତି । ପୁଣି ଛୁଟି ପରେ ମାଗିଲେ, ସାର୍ଟିଫିକେଟ ଦେଖାଇବା ଛଡ଼ା ଅନ୍ୟ ଉପାୟ ନଥିଲା । ତାହାକୁ ପଢ଼ିଲା ପରେ 'କିଏ ତୁମକୁ ଏଠାରେ ନାମ ଲେଖାଇବାକୁ ଅନୁମତି ଦେଲା' ବୋଲି ପଚାରିଲେ । ତଣ୍ଟି ଶୁଖିଗଲା–ହାତଯୋଡ଼ି କହିଲି, 'ସାର୍ ସେ ଆପଣଙ୍କ ଦୟା' । ଅଧକ୍ଷ ହସିଲେ । ସାର୍ଟିଫିକେଟକୁ ଚିରି ଫୋପାଡ଼ିଦେଲେ କହିଲେ, ''ଏ କଲେଜ ଛାଡ଼ିବାବେଳେ ମୋ ସାର୍ଟିଫିକେଟ ଦେଖିବ'' ।

ତା'ର କିଛିଦିନ ପରେ ଓଡ଼ିଶାରେ ଗୋଟିଏ ଅଣକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଶିକ୍ଷାମନ୍ତ୍ରୀ ଗୋଦାବରୀଶ ମିଶ୍ର ମୋ ଉପରୁ କଟକଣା ଉଠାଇଦେବା ପରେ ମୁଁ ଟ୍ରାନ୍ସଫର ନେଇ ରେଭେନ୍ସା କଲେଜକୁ ଆସିଲି ଆଇନ-କ୍ଲାସରେ ଯୋଗଦେବାପାଇଁ । ପାଟନା ଆଇନ କଲେଜର ଅଧକ୍ଷଙ୍କ ସାର୍ଟିଫିକେଟରେ ଉଲ୍ଲେଖ ଥିଲା ଯେ ମୁଁ ତାଙ୍କ କଲେଜର ଗୌରବ । ରେଭେନ୍ସା କଲେଜ ଅଧକ୍ଷ ତା ପଢ଼ି ମୋ ମୁହଁକୁ ଚାହିଁ ନୀରବ ହୋଇଗଲେ ।

## (୩୪)

## ରୁଷ୍ ଉପରେ ଜର୍ମାନୀର ଆକ୍ରମଣ

୧୯୪୧ ମସିହା ଜୁନ୍ ମାସରେ ରୁଷ ଉପରେ ଜର୍ମାନୀର ଓ ଡିସେମ୍ବର ମାସରେ ପର୍ଲ-ହାର୍‌ବର୍ ଉପରେ ଜାପାନର ଆକ୍ରମଣ ଫଳରେ ଯୁଦ୍ଧ ସମଗ୍ର ପୃଥିବୀକୁ ବ୍ୟାପିଗଲା । ସେପର୍ଯ୍ୟନ୍ତ ଆମେରିକା ବ୍ରିଟେନକୁ ସାହାଯ୍ୟ କରୁଥିଲା, କିନ୍ତୁ ଜାପାନ ଆକ୍ରମଣ ପରେ ଯୁଦ୍ଧରେ ଭାଗୀଦାର ହୋଇଗଲା । ତା' ପୂର୍ବରୁ ଜାପାନ-ଚୀନ୍ ଯୁଦ୍ଧ ଆରମ୍ଭ ହୋଇଥିଲା । ଜର୍ମାନୀର ରୁଷ ଉପରେ ଆକ୍ରମଣକୁ କଂଗ୍ରେସ ନିନ୍ଦା କରିଥିଲା । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ମଧ ଉଦ୍‌ବେଗ ପ୍ରକାଶ କରିଥିଲେ । ସେତେବେଳକୁ ସୁଭାଷ ବୋଷ ରୋମ୍‌ରେ । ସେ ବ୍ରିଟେନର ଶତ୍ରୁପକ୍ଷର ସାହାଯ୍ୟ ପାଇବା ଆଶାରେ ଜର୍ମାନୀକୁ ଯାଇଥିଲେ ମଧ ଜର୍ମାନର ଏ ପଦକ୍ଷେପକୁ ପ୍ରକାଶ୍ୟରେ ନାପସନ୍ଦ କରିଥିଲେ ଓ ତାଙ୍କ ପ୍ରତିବାଦ ଜର୍ମାନୀର ବୈଦେଶିକ ବିଭାଗକୁ ଜଣାଇଥିଲେ । ରୁଷ ପ୍ରତି

ଭାରତୀୟ ଜନତାର ସମର୍ଥନ ରହିଛି ବୋଲି ସେ ସ୍ପଷ୍ଟ କରିଥିଲେ । ରୁଷ ବିରୁଦ୍ଧରେ ଯୁଦ୍ଧ କରିବାକୁ ଜର୍ମାନୀ ଆଦେଶେ ଦେଲେ ତାହା ଅମାନ୍ୟ କରିବାକୁ ସେ ଜର୍ମାନୀରେ ତାଙ୍କଦ୍ୱାରା ଗଠିତ ଭାରତୀୟ ସାମରିକ ଫୌଜକୁ ନିର୍ଦ୍ଦେଶ ଦେଇଥିଲେ । ପରେ, ରୁଷ ସହିତ ଯୁଦ୍ଧ ପାଇଁ ଜର୍ମାନୀର ଆଦେଶକୁ ଅମାନ୍ୟ କରି ଏହି ଫୌଜର ବହୁ ସେନାନୀ ମୃତ୍ୟୁଦଣ୍ଡ ଓ ଜେଲଦଣ୍ଡ ଭୋଗିଥିଲେ ।

ରୁଷ୍ ଗବେଷକ ପୋଡୁବିନି ବୋଷଙ୍କର ଉଚ୍ଚ ପ୍ରଶଂସା କରି ଲେଖିଛନ୍ତି ଯେ ବୋଷ ସର୍ବଦା ଦେଶର ସ୍ୱାଧୀନତା ନିମନ୍ତେ ଜୀବନ ବଳି ଦେବାକୁ ପ୍ରସ୍ତୁତ ଥିଲେ । ସେ ଏକଚ୍ଛତ୍ରବାଦକୁ କେବେ ସମର୍ଥନ କରୁନଥିଲେ । ବୋଷଙ୍କ ଭାରତୀୟ ଫୌଜ ଜର୍ମାନୀର ହାତବାରିସି ନଥିଲା ବୋଲି ଅନ୍ୟ ଜଣେ ରୁଷ ଗବେଷକ ରାଏବୋଭଙ୍କ ଲେଖାରୁ ପ୍ରକାଶ ।

ରୁଷ ଓ ମିତ୍ରପକ୍ଷ ଏକାଠି ହୋଇଯିବା ପରେ ଭାରତୀୟ କମ୍ୟୁନିଷ୍ଟମାନଙ୍କ ମତ ବଦଳିଗଲା । ସେପର୍ଯ୍ୟନ୍ତ ଏହା ବେଆଇନ ଅନୁଷ୍ଠାନ ଥିଲା– ତା'ଉପରୁ ସରକାରୀ କଟକଣା ଉଠିଗଲା । ତା'ପରେ କମ୍ୟୁନିଷ୍ଟ ଦଳ ପାଇଁ ସାମ୍ରାଜ୍ୟବାଦୀ-ଯୁଦ୍ଧ 'ଜନଯୁଦ୍ଧ'ରେ ପରିଣତ ହେଲା । ବ୍ରିଟିଶର ଯୁଦ୍ଧ-ଉଦ୍ୟମକୁ ସାହାଯ୍ୟ କରିବା ପାଇଁ ସେମାନେ ଆଗେଇ ଆସିଲେ । ତା'ର ଫଳହେଲା ଛାତ୍ରସଂଘର ବିଭାଜନ– ଗୋଟିଏ ଯୁଦ୍ଧ ଉଦ୍ୟମ ସପକ୍ଷବାଦୀ କମ୍ୟୁନିଷ୍ଟ ଛାତ୍ରସଂଘ । ବନ୍ଧୁ ବୀରେନ୍ ମିତ୍ର କମ୍ୟୁନିଷ୍ଟ-ଛାତ୍ରସଂଘର ଓ ମୁଁ ବିରୋଧୀ ଛାତ୍ରସଂଘର ସାଧାରଣ ସଂପାଦକ ହେଲୁ । ମୋର ସଂପାଦନାରେ 'ଛାତ୍ରଶକ୍ତି' ନାମକ ଏକ ସାପ୍ତାହିକ ପତ୍ରିକା 'ନବଭାରତ' ପ୍ରେସରୁ ପ୍ରକାଶ ପାଇଥିଲା ।

## (୩୫)

## ଯୁଦ୍ଧର ଗତି

ଥାଇଲ୍ୟାଣ୍ଡ, ଜାପାନ ଅତି ଦ୍ରୁତଗତିରେ ମାଲୟ, ସିଂଗାପୁର, ବର୍ମା ପ୍ରଭୃତି ଦେଶକୁ ଦଖଲ କରିନେଲେ । ୧୯୪୨ ମସିହା ଫେବୃଆରୀ ୧୫ତାରିଖରେ ସିଂଗାପୁରର ପତନପରେ ବୋଷ ଜର୍ମାନୀର ଆଜାଦ୍ ହିନ୍ଦ ରେଡ଼ିଓ ମାଧ୍ୟମରେ ଦେଇଥିବା ଭାଷଣର ସାରମର୍ମ ହେଲା– ସିଂଗାପୁର ପତନର ଅର୍ଥ ହେଉଛି ବ୍ରିଟୀଶ ସାମ୍ରାଜ୍ୟର ପତନ । ଭାରତର ସ୍ୱାଧୀନତା ହାସଲ ସମୟ ଆସିଗଲା ।

ଯୁଦ୍ଧ ଭାରତର ଦ୍ୱାରଦେଶରେ ପହଞ୍ଚିଗଲା । ଜାପାନ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜକୁ ଦଖଲ କରିନେଲା । ବଙ୍ଗୋପସାଗରରେ ଜାପାନୀ ଯୁଦ୍ଧ-ଜାହାଜ ପଇଁତରା

ମାରିଲା । ଓଡ଼ିଶା ସମେତ କେତେକ ରାଜ୍ୟରେ ଜାପାନ ପକ୍ଷରୁ ବୋମା ପଡ଼ିଲା । ଭାରତ ସରକାର ଭୟଭୀତ ହୋଇଗଲେ । ଜାପାନ ବଙ୍ଗପ୍ରଦେଶକୁ ଦଖଲ କରିବାକୁ ଉଦ୍ୟମ କରିବ ବୋଲି ଆଶଙ୍କାରେ ଶିକ୍ଷାନୁଷ୍ଠାନ, ପୋଲ, ରାସ୍ତା ପ୍ରଭୃତି ଧ୍ୱଂସ କରିଦେବାକୁ ସରକାର ଯୋଜନା କରିଥିଲେ । ଜାମସେଦପୁରରେ ଅବସ୍ଥିତ ଲୁହା ଓ ଇସ୍ପାତ କାରଖାନାର ଧ୍ୱଂସ ମଧ୍ୟ ଏହି ଯୋଜନାର ଅନ୍ତର୍ଭୁକ୍ତ ଥିଲା ବୋଲି ମୌଲାନା ଆଜାଦ୍ ତାଙ୍କ ଜୀବନୀରେ ଲେଖିଛନ୍ତି । ସମୁଦ୍ର ଉପକୂଳରୁ ନୌକା, ସାଇକେଲ, ମଟର କୋଡ଼ିଏ ମାଇଲ ଦୂରକୁ ହଟାଇ ଦେବାପାଇଁ ସରକାରୀ ଆଦେଶ ହେଲା । ଆଲୁଅ କଟକଣା ଜାରୀହେଲା ।

ଜାପାନ ଆକ୍ରମଣର ପ୍ରତିକାର ସ୍ୱରୂପ କଂଗ୍ରେସ ତରଫରୁ ବ୍ୟବସ୍ଥା ଆରମ୍ଭ ହେଲା– ଜାପାନ ବିରୁଦ୍ଧରେ ଜନମତ ସୃଷ୍ଟି । ଜାପାନୀ ସେନାନୀର ପ୍ରତିରୋଧ ପାଇଁ ସ୍ୱେଚ୍ଛାସେବକ ବାହିନୀ ଗଠନ ପ୍ରକ୍ରିୟା ଚାଲିଲା । ଜାପାନ-ସେନାନୀ ସହିତ ସୁଭାଷ ବୋଷ ଆସିଲେ ମୁଁ ତାଙ୍କ ସହିତ ଲଢ଼ିବି ବୋଲି ପଣ୍ଡିତ ନେହରୁ ଘୋଷଣାକଲେ । କିନ୍ତୁ ଗାନ୍ଧିଜୀଙ୍କ ମତ ଭିନ୍ନ– ଇଂରେଜ ସରକାର ହଟିଗଲେ ଜାପାନ କେବେହେଁ ଭାରତ-ଆକ୍ରମଣ କରିବ ନାହିଁ ବୋଲି ତାଙ୍କର ବିଶ୍ୱାସ ଥିଲା । ଆଜାଦ୍ ହିନ୍ଦ ଫୌଜ୍‌ର ରକ୍ତରେ ସ୍ୱାଧୀନତା ହାସଲ ହେବ ବୋଲି ସୁଭାଷ ବୋଷ ସ୍ପଷ୍ଟ କରିଥିଲେ । ଆଜାଦ୍ ହିନ୍ଦ୍ ଫୌଜର ଅନୁପ୍ରବେଶକୁ ସାହାଯ୍ୟ କରିବାପାଇଁ ଫରଓ୍ୱାର୍ଡ଼ ବ୍ଲକର ଗୁପ୍ତ ସଂଗଠନ କାର୍ଯ୍ୟକ୍ରମ ଚାଲିଲା ।

## (୩୬)

## କଟକରେ ଶୀଳଭଦ୍ର ଯାଜୀ

୧୯୪୧ ମସିହା ଶେଷଭାଗରେ ଓଡ଼ିଶାରେ ଗୋଟିଏ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସୁଭାଷ ବୋଷଙ୍କ ନିର୍ଦ୍ଦେଶରେ ଓଡ଼ିଶା ବ୍ୟବସ୍ଥାସଭାର କଂଗ୍ରେସ ସଭ୍ୟ ଗୋଦାବରୀଶ ମିଶ୍ର, ଯଦୁମଣି ମଙ୍ଗରାଜ, ଦିବାକର ପଟ୍ଟନାୟକ, ପ୍ୟାରିଶଙ୍କର ରାୟ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ, ସାଧୁଚରଣ ଦାସ ପ୍ରଭୃତି ସଭ୍ୟମାନଙ୍କ ସହିତ ମିଶି ଏହି ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଯୁଦ୍ଧ-ଉଦ୍ୟମକୁ ସାହାଯ୍ୟ କରିବା ଆଳରେ ବାସ୍ତବରେ ତାର ବିରୋଧ ପାଇଁ ଓ ବୋଷଙ୍କ ପରିକଳ୍ପିତ ଆଜାଦ୍ ହିନ୍ଦ୍ ଫୌଜ୍‌ର ଅନୁପ୍ରବେଶକୁ ସୁଗମ କରିବାପାଇଁ ଏହି ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ବିହାର, ଆସାମ ଓ ବଂଗପ୍ରଦେଶରେ ଏପରି ମନ୍ତ୍ରିମଣ୍ଡଳ ଗଠନ ବୋଷଙ୍କ ଯୋଜନାର

ଅନ୍ତର୍ଭୁକ୍ତ ଥିଲା । ବଙ୍ଗପ୍ରଦେଶରେ ଫଜଲୁଲ ହକ୍‌ଙ୍କ ମନ୍ତ୍ରିମଣ୍ଡଳରେ ଶରତ ବୋଷ ଗୃହମନ୍ତ୍ରୀ ହେବାର ସ୍ଥିରହୋଇଥିଲା, କିନ୍ତୁ ସରକାର ତାଙ୍କୁ ଗିରଫ କରିବା ପରେ ଫରଓ୍ୱାଡ୍ ବ୍ଲକ ସଭ୍ୟ ସଂତୋଷ ବସୁ ଓ ପ୍ରମଥନାଥ ମୁଖାର୍ଜୀ ଏହି ମନ୍ତ୍ରିମଣ୍ଡଳର ସଭ୍ୟ ହୋଇଥିଲେ ।

ଓଡ଼ିଶାରେ ପାରଳା ମହାରାଜା ମୁଖ୍ୟମନ୍ତ୍ରୀ, ଗୋଦାବରୀଶ ମିଶ୍ର ଓ ଓଡ଼ିଶା ମୁସ୍‌ଲିମ୍ ଲିଗ୍ ସଂପାଦକ କଟକର ଓକିଲ ଶୋଭାନ୍ ଖାଁ ମନ୍ତ୍ରୀ ଓ ପ୍ୟାରୀଶଙ୍କର ରାୟ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ହେଲେ । ନୀଳକଣ୍ଠ ଦାସ ଯୁଦ୍ଧ-ସାମ୍ମୁଖ୍ୟର ମୁଖ୍ୟ ହେଲେ ଓ ଯୁଦ୍ଧ-ସାମୁଖ୍ୟ ତରଫରୁ ତାଙ୍କ ସଂପାଦନାରେ ଦୈନିକ 'ନବଭାରତ' ସଂବାଦପତ୍ର ପ୍ରକାଶପାଇଲା ।

ସେତେବେଳକୁ ସରକାର 'ଫରଓ୍ୱାର୍ଡ଼-ବ୍ଲକ'କୁ ବେଆଇନ ଅନୁଷ୍ଠାନ ରୂପେ ଘୋଷଣା କରିଥାନ୍ତି । 'ବ୍ଲକ'ର କର୍ମୀମାନଙ୍କ ଉପରେ ପୁଲିସର କଡ଼ା ନଜର ଥାଏ । ମୁଁ, ବଳରାମ ମହାନ୍ତି, ସତ୍ୟନାରାୟଣ ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ର ପ୍ରମୁଖ କେତେକ ଫରଓ୍ୱାଡ଼ ବ୍ଲକ କର୍ମୀ 'ନବଭାରତ'ର ସହକାରୀ ସଂପାଦକ ରୂପେ ଯୋଗ ଦେଇ ବାଙ୍କାବଜାରସ୍ଥିତ ପ୍ରେସରେ ରହିଲୁ । ନୀଳକଣ୍ଠ ଦାସ କେନ୍ଦ୍ର ବ୍ୟବସ୍ଥାସଭାର ସଭ୍ୟ ଥିବା ଯୋଗୁ ବହୁସମୟ ଦିଲ୍ଲୀରେ ରହୁଥିଲେ । କାଗଜର ମୁଖ୍ୟଭାର ମୋତେ ଦେଇଥିଲେ ।

ଏ ବ୍ୟବସ୍ଥାକୁ ଲାଟ୍ ଲୁଇସ୍‌ସାହେବ ପସନ୍ଦ କରିନଥିଲେ । ଗୋଦାବରୀଶ ମିଶ୍ରଙ୍କୁ ସେ ସଂଦେହ କରୁଥିଲେ । ମିଳିତ-ମନ୍ତ୍ରିମଣ୍ଡଳର ବାହୁଛାୟା ତଳେ ଆମେ ବେଆଇନ ଫରଓ୍ୱାର୍ଡ଼ ବ୍ଲକ୍‌ର ଗୁପ୍ତ ସଂଗଠନ ସହିତ ସଂପର୍କ ରଖି ତା' ନିର୍ଦ୍ଦେଶ ଅନୁଯାୟୀ କାର୍ଯ୍ୟ କରୁଥିଲୁ ।

ଫରଓ୍ୱାର୍ଡ଼ ବ୍ଲକର ଉପସଭାପତି ଓ ବିହାରର ଖ୍ୟାତନାମା ନେତା ଶୀଳଭଦ୍ର ଯାଜୀ ସେତେବେଳକୁ ଆତ୍ମଗୋପନକାରୀ । ତାଙ୍କୁ ଯିଏ ଧରେଇଦେବ ସେ ପଚିଶ ହଜାର ଟଙ୍କା ପୁରସ୍କାର ପାଇବ ବୋଲି ସରକାର ଘୋଷଣା କରିଥିଲେ । ଛାତ୍ରଜୀବନରୁ ସେ ସ୍ୱାଧୀନତା-ଆନ୍ଦୋଳନରେ ଯୋଗଦେଇଥିଲେ । ଅଧ୍ୟାପକ ଏନ୍.ଜି. ରଙ୍ଗା, ସ୍ୱାମୀ ସହଜାନନ୍ଦ ସରସ୍ୱତୀ, ଇନ୍ଦୁଲାଲ ଯାଜ୍ଞିକଙ୍କ ନେତୃତ୍ୱରେ ଗଠିତ ନିଖିଳ ଭାରତ କୃଷକ ମହାସଭାର ସେ ସାଧାରଣ ସଂପାଦକ ଥିଲେ । ୧୯୪୦ ମସିହାରେ ରାମଗଡ଼ଠାରେ ଅନୁଷ୍ଠିତ 'ନିଖିଳ-ଭାରତ ସାଲିସ ବିରୋଧୀ ସମ୍ମିଳନୀ'ର ସେ ଅନ୍ୟତମ ପୁରୋଧା ଥିଲେ । ସୁଭାଷ ବୋଷଙ୍କ ଅନ୍ତର୍ଦ୍ଧାନ ପରେ,ଯାଜୀଜୀ ଆତ୍ମଗୋପନ କରି ବେଆଇନ ଫରଓ୍ୱାର୍ଡ଼ ବ୍ଲକ ଗୁପ୍ତ ସଂଗଠନର ଦାୟିତ୍ୱ ନେଇଥିଲେ ।

ଛଦ୍ମବେଶରେ ଯାଜୀଜୀ କଟକରେ ପହଁଚି ଆମ ସହିତ ଯୋଗସୂତ୍ର ସ୍ଥାପନ କଲେ । ବିଭିନ୍ନ କାର୍ଯ୍ୟକ୍ରମ ବିଷୟରେ ବହୁତ ଆଲୋଚନା ହେଲା । ତିନିଦିନ ସେ

କଟକରେ ରହିଲେ । ଗୁଇନ୍ଦା ବିଭାଗର ସଂଦେହ ଏଡ଼ି ହେଲାନାହିଁ । ରାତି ମାନ୍ଦ୍ରାଜ-ମେଲ୍‌ରେ ସେ ଫେରିଯିବା କଥା । ତାଙ୍କୁ ଷ୍ଟେସନରେ ଛାଡ଼ିବାପାଇଁ ମୁଁ ଯାଇଥିଲି । ଅର୍ଦ୍ଧରାତ୍ର– ଚାରିଆଡ଼ ଅନ୍ଧାର । ଆମେ ଦୁହେଁ ଷ୍ଟେସନ ଆଡ଼େ ଚାଲିଛୁ । ରେଭେନ୍ସା କଲେଜ ପୂର୍ବ ଛାତ୍ରାବାସ ନିକଟରେ ମନେହେଲା, କିଏ ଜଣେ ପଛରେ ଚାଲିଛି । ପରିସ୍ରା-ବାହାନାରେ ମୁଁ ଗଛତଳେ ବସିଗଲି । ଉଠି ଦେଖିଲି, ଯାଜୀଜୀ ନାହାନ୍ତି, ଗୁଇନ୍ଦା ବିଭାଗ ଇନସ୍‌ପେକ୍ଟର ନନ୍ଦ ବାନାର୍ଜୀ ଛିଡ଼ାହୋଇଛନ୍ତି । ‘‘ନିଦ ଲାଗୁନାହିଁ, ଚାହା ଖାଇବାକୁ ଷ୍ଟେସନ ଯାଉଛି’’ ବୋଲି ତାଙ୍କୁ କହିଲି । ଦୁହେଁ ମିଶି ଚାଲିଲୁ ଷ୍ଟେସନକୁ । ସେଠି କ୍ୟାଣ୍ଟିନ୍‌ରେ ଚାହା ପିଇଲୁ । କିଛି ଦୂରରେ ଆଉ ଗୋଟିଏ ଚଉକିରେ ଯାଜୀଜୀ ବସିଥାନ୍ତି । ନନ୍ଦବାବୁଙ୍କ ଆଖି ତାଙ୍କ ଉପରେ । କିଛି ସମୟ ପରେ ଯାଜୀଜୀ ପିନ୍ଧିଥିବା କୋଟ୍‌କୁ ଚଉକି ଉପରେ ରଖି ବାହାରକୁ ଗଲେ । ମେଲ୍‌ଗାଡ଼ି ଆସିଗଲା । ଯାଜୀଜୀ ଚାଲିଗଲେ, କୋଟ୍‌କୁ ନଜରରେ ରଖି ନନ୍ଦବାବୁ ବସିରହିଲେ ତାଙ୍କ ଅପେକ୍ଷାରେ । ମୁଁ କହିଲି– ‘ଏଥର ଉଠ, ଆମେ ଯିବା’ । ‘ମୁଁ ଠକିଗଲି’ ବୋଲି ନନ୍ଦବାବୁ କହିଲେ ।

(୩୭)

## ମିଳିତ ମନ୍ତ୍ରିମଣ୍ଡଳ

ମିଳିତ ମନ୍ତ୍ରିମଣ୍ଡଳ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ କଟକ ମେଡ଼ିକାଲ କଲେଜ ପ୍ରତିଷ୍ଠିତ ହୋଇଥିଲା । ଏହାର ଛତ୍ରତଳେ ଆଶ୍ରୟ ନେଇ ଫରଓ୍ୱାଡ୍-ବ୍ଲକ କର୍ମୀଗଣ ଗୁପ୍ତ-ସଂଗଠନର କାର୍ଯ୍ୟକ୍ରମ ପରିଚାଳନା କରୁଥିଲେ । କିନ୍ତୁ ଯୁଦ୍ଧ ଭାରତର ନିକଟବର୍ତ୍ତୀ ହେଲା ପରେ ଏହାର ସ୍ୱରୂପ ପ୍ରକାଶ ପାଇଲା । ଜର୍ମାନ ସେନାବାହିନୀ ଇଂରେଜ ସେନାବାହିନୀକୁ କିଳକବିଦ୍ଧ କଲେ ବୋଲି ‘ନବଭାରତ’ର ଏକ ଶିରୋନାମା ପ୍ରକାଶ ପାଇବାରେ ଲାଟସାହେବ ଗୋଦାବରୀଶ ମିଶ୍ରଙ୍କୁ ଡାକି ଉଦ୍‌ବେଗ ପ୍ରକାଶ କଲେ । ଗୋଦାବରୀଶ ମିଶ୍ର ଅତି ବିଚକ୍ଷଣ ଥିଲେ । ଗୋରା ଆଇ.ସି.ଏସ୍. ଅଫିସରଗଣ ତାଙ୍କୁ ଭୟକରୁଥିଲେ । ଉଭୟ ଇଂରେଜୀ ଓ ଓଡ଼ିଆଭାଷାରେ ତାଙ୍କ ଦକ୍ଷତା ସର୍ବସ୍ୱୀକୃତ ଥିଲା । ‘କିଳକବିଦ୍ଧ’ ଶବ୍ଦ ଆପତ୍ତିଜନକ ନୁହେଁ ବୋଲି ସେ ଲାଟସାହେବଙ୍କୁ ବୁଝାଇଲେ । ହଠାତ୍ ଦିନେ ନବଭାରତ ପ୍ରେସ ଖାନତଲାସ ହେଲା । ସୁଭାଷ ବୋଷଙ୍କ ଜୀବନୀ ସେ ପ୍ରେସରୁ ମୁଦ୍ରିତ ହୋଇଥିଲା । ସେ ସବୁକୁ ବାଜ୍ୟାପ୍ତି କରିବା ସଂଗେ ସଂଗେ ଲେଖକ ବଳରାମ ମହାନ୍ତି ଓ ପ୍ରକାଶକ ଅଶୋକ ଦାସଙ୍କୁ ଗିରଫ କରାଗଲା ।

ନୀଳକଣ୍ଠ ଦାସଙ୍କ ଭାଷଣ ଓ ଲେଖାରେ ଲାଟସାହେବ ବିରକ୍ତ ହେଲେ । ଯୁଦ୍ଧ ସାମ୍ମୁଖ୍ୟ ତରଫରୁ ଆୟୋଜିତ ଏକ ସାଧାରଣ ସଭାରେ "God save the king" ଧ୍ୱନିରେ ବିରକ୍ତହୋଇ ନୀଳକଣ୍ଠ ଦାସ କହିଲେ "God save the Nation" ବୋଲି ଧ୍ୱନି ଦିଅ । 'ନବଭାରତ'ରେ ଲେଖିଲେ– "ଏହି ସାମ୍ରାଜ୍ୟବାଦ ନାଜୀବାଦଠାରୁ ଆହୁରି କଦର୍ଯ୍ୟ । ଭାରତୀୟମାନେ ଏହାକୁ ଘୃଣାରେ ବିରୋଧ କରିବା ଉଚିତ । ଯୁଦ୍ଧ-ସାମ୍ମୁଖ୍ୟର ମୁଖ୍ୟଙ୍କର ଏ ପ୍ରକାର ଭାଷଣ ଓ ଲେଖାରେ ଲାଟସାହେବ ଉତ୍ତ୍ୟକ୍ତ ହୋଇପଡ଼ିଲେ । ଗୋଦାବରୀଶ ମିଶ୍ରଙ୍କ ସହିତ ନୀଳକଣ୍ଠ ଦାସଙ୍କ ତୀବ୍ର ମତଭେଦ ହେଲା । ଯୁଦ୍ଧ-ସାମ୍ମୁଖ୍ୟର ସଭାପତି ପଦରୁ ଇସ୍ତଫା ଦେବାକୁ ତାଙ୍କୁ ସରକାରୀ ନିର୍ଦ୍ଦେଶ ମିଳିଲା । ମନ୍ତ୍ରିମଣ୍ଡଳକୁ ଭାଙ୍ଗିବାପାଇଁ ସେ ଚେଷ୍ଟାକଲେ ଓ ତାହା ଭାଙ୍ଗିଗଲା ।

ସେତେବେଳକୁ ବ୍ରହ୍ମପୁର ଜେଲରେ ମୁଁ ଅଟକବନ୍ଦୀ । ମନେପଡ଼ିଲା ସତ୍ୟବାଦୀ ସ୍କୁଲ କଥା– କିପରି ମୁଖ୍ୟତଃ ନୀଳକଣ୍ଠ-ଗୋଦାବରୀଶଙ୍କ ମନୋମାଳିନ୍ୟରେ ତାହା ଭାଙ୍ଗିଥିଲା । ନୀଳକଣ୍ଠ ଦାସ ହେଡ୍‌ମ.ଷ୍ଟର ଥିଲେ । ଗୋଦାବରୀଶ ମିଶ୍ର ବି.ଟି. ପାସ୍ କରି ଆସିଲାପରେ ସେ ପଦବୀ ଚାହିଁଲେ । ଗୋପବନ୍ଧୁ ଦାସଙ୍କ ନିର୍ଦ୍ଦେଶକ୍ରମେ ସେ ହେଡ୍‌ମାଷ୍ଟର ହେଲେ ଓ ନୀଳକଣ୍ଠ ଦାସ ଗାଁକୁ ଚାଲିଗଲେ । କ୍ରମେ କ୍ରମେ ସ୍କୁଲ ଅଚଳ ହୋଇଗଲା । ଗୋଦାବରୀଶ ମିଶ୍ର ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି– "ଗୋପବନ୍ଧୁବାବୁ ବହୁ ଆଶା ମନରେ ପୋଷଣ କରି ସତ୍ୟବାଦୀ ସ୍କୁଲ ବସାଇଲେ । ମୋର ମନେହେଉଛି ସେ ଗବ ମଞ୍ଜି ପୋତିଥିଲେ । ଫଳରେ ଗଛଟା ବଢ଼ିଲା । ଫୁଲ ଧରିଲା । ଫଳ ଫଳିଲା, କିନ୍ତୁ ସାଙ୍ଗେ ସାଙ୍ଗେ ବୁଢ଼ାହୋଇ କ୍ଷୟ ପାଇବାକୁ ଆରମ୍ଭକଲା । ଆମମାନଙ୍କ ଭିତରେ କାହା ମନ କାହା ସହିତ ମିଳିଲା ନାହିଁ । × × × ସ୍କୁଲ କାର୍ଯ୍ୟରେ ଶିଥିଳତା ଦେଖାଗଲା । ସ୍କୁଲ ସମୟରେ କିଏ ବସି ଇଂରାଜୀରୁ ପଦ୍ୟ ଅନୁବାଦ କଲେ, କିଏ ନିଜ ଘର ବ୍ୟବସ୍ଥା ବୁଝିବା ପାଇଁ ଗାଁରେ ରହିଲେ ।"

ମିଳିତ ମନ୍ତ୍ରିମଣ୍ଡଳ ଗଠନ ହେବାବେଳେ, କଂଗ୍ରେସ ମହଲରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ସରକାରଙ୍କ ଯୁଦ୍ଧ-ନୀତି ବିରୁଦ୍ଧରେ କଂଗ୍ରେସ ଆନ୍ଦୋଳନ କରିଥିବାବେଳେ କେତେକ କଂଗ୍ରେସ ନେତାଙ୍କ ଯୁଦ୍ଧ-ଉଦ୍ୟମକୁ ସମର୍ଥନ ଦେଶଦ୍ରୋହୀତାର ପରିଚାୟକ ବୋଲି କଂଗ୍ରେସ ମତ ଦେଲେ । ଏହି ମନ୍ତ୍ରିମଣ୍ଡଳକୁ ସମର୍ଥନ କରୁଥିବା କଂଗ୍ରେସ-ସଭ୍ୟଙ୍କୁ ଦଳରୁ ବହିଷ୍କାର କରାଗଲା । ସେମାନଙ୍କୁ ଆକ୍ଷେପ କରି ବିଶିଷ୍ଟ ନେତା ହରେକୃଷ୍ଣ ମହତାବ ତାଙ୍କ ଆତ୍ମଜୀବନୀ 'ସାଧନାର ପଥେ'ରେ ଲେଖିଛନ୍ତି– "ଭବିଷ୍ୟତ ବଂଶଧରମାନେ ଏ ବୃତ୍ତାନ୍ତରେ କିପରି ଲଜ୍ଜିତ ହେବେ, ତାହା ଥରେ ସେମାନେ ଭାବିଲେ କି ?"

ବାସ୍ତବରେ ସୁଭାଷବୋଷଙ୍କ ଇଙ୍ଗିତରେ ତାଙ୍କ କାର୍ଯ୍ୟକ୍ରମକୁ ସୁଗମ କରିବା ଉଦ୍ଦେଶ୍ୟରେ ଏହି ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ଏବଂ ଏହି ସରକାରର ଛତ୍ରତଳେ ଆଶ୍ରୟ ନେଇ ଫରୱାର୍ଡ଼-ବ୍ଲକ କାର୍ଯ୍ୟକଳାପ ଜଣାପଡ଼ିବା ପରେ, ଏ ମତ ବଦଳି ଯାଇଛି । ନିନ୍ଦା ପ୍ରଶଂସାରେ ପରିଣତ ହୋଇଛି । ପରେ ନୀଳକଣ୍ଠ ସ୍ମାରକୀ ପୁସ୍ତକରେ ମହତାବବାବୁ ଲେଖିଛନ୍ତି– "ଗାନ୍ଧିଜୀଙ୍କର ଅହିଂସାତ୍ମକ ଆନ୍ଦୋଳନକୁ ସୁଭାଷଚନ୍ଦ୍ର ବୋଷ ଯେତେବେଳେ ଆହ୍ୱାନ କରି ନିଜର ସ୍ୱକୀୟ କାର୍ଯ୍ୟକ୍ରମ ଆରମ୍ଭ କଲେ, ପଣ୍ଡିତ ନୀଳକଣ୍ଠ ସୁଭାଷବାବୁଙ୍କର ଜଣେ ଦୃଢ଼ ସମର୍ଥକ ଥିଲେ । ସେହି କାର୍ଯ୍ୟକ୍ରମରେ ସେ କଂଗ୍ରେସ ଛାଡ଼ିଲେ ଏବଂ ଯୁଦ୍ଧକାଳୀନ ପରିସ୍ଥିତିରେ ଏକ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନର ପୁରୋଧା ହେଲେ । ସେ ସମୟର ସରକାରୀ କାଗଜପତ୍ର ପ୍ରକାଶ ପାଇନାହିଁ । ସେସବୁ ପ୍ରକାଶ ପାଇଲେ ଜଣାଯିବ କିପରି ସୁଭାଷବାବୁଙ୍କ କାର୍ଯ୍ୟକ୍ରମ ଓଡ଼ିଶାରେ ପ୍ରସାର ଲାଭ କରିଥିଲା । ବିବୁଧେନ୍ଦ୍ର ମିଶ୍ର, ଅଶୋକ ଦାସ, ସୁରଜମଲ୍ଲ ସାହା, ଶ୍ରୀହର୍ଷ ମିଶ୍ର ପ୍ରମୁଖ ଯୁବକ ସେତେବେଳେ ଯେ ବନ୍ଦୀ ହୋଇଥିଲେ, ତାହା ଏହି ସୁପରିକଳ୍ପିତ ଆନ୍ଦୋଳନର ପରିଣାମ ଥିଲା ।"

ନେତାଜୀଙ୍କ ଆଜାଦ୍‌ହିଂଦ୍ ଫୌଜକୁ ସାହାଯ୍ୟ କରବା ନିମନ୍ତେ ଏହି ମନ୍ତ୍ରିମଣ୍ଡଳ ଗଠିତହୋଇଥିଲା ବୋଲି ସାମ୍ବାଦିକ ସୁନିତି ଘୋଷ "Orissa in Turmoil" ପୁସ୍ତକରେ ଲେଖିଛନ୍ତି ।

(୩୮)

## ଚ୍ୟାଙ୍ଗ କାଇସେକ୍‌ଙ୍କ ଭାରତ ଆଗମନ

ଯୁଦ୍ଧ ପରିସ୍ଥିତି ବିଷୟରେ ଭାରତ ସରକାର ତଥା କଂଗ୍ରେସ ନେତୃବୃନ୍ଦଙ୍କ ସହିତ ଆଲୋଚନା ସକାଶେ ଚୀନ୍‌ର ସର୍ବୋଚ୍ଚ କର୍ତ୍ତା ଚ୍ୟାଙ୍ଗ କାଇସେକ୍ ୧୯୪୨ ମସିହା ଫେବୃଆରୀ ମାସରେ ସସ୍ତ୍ରୀକ ପହଁଚି ଭାରତ ସରକାରଙ୍କ ଅତିଥି ହେଲେ । କଂଗ୍ରେସ ନେତାଙ୍କ ସହିତ ତାଙ୍କ ଆଲୋଚନାକୁ ସରକାର ପସନ୍ଦ କରିନଥିଲେ ମଧ୍ୟ ଯୁଦ୍ଧ-ପରିସ୍ଥିତି ବିଚାରରେ ସେ ବିଷୟରେ କୌଣସି ମତ ପ୍ରକାଶ କରିନଥିଲେ ।

ଜବାହରଲାଲ ନେହୁରୁ ଚୀନ୍ ଗସ୍ତରେ ଯାଇଥିଲାବେଳେ ଚିଆଙ୍ଗଙ୍କ ଅତିଥି ହୋଇଥିଲେ । ଉଭୟଙ୍କ ମଧ୍ୟରେ ବଂଧୁତା ସ୍ଥାପନ ହୋଇଥିଲା । ଭାରତର ରାଜନୀତିକ ସମସ୍ୟା ବିଷୟରେ ସେ ଭଲଭାବରେ ଜାଣିଥିଲେ । ଯୁଦ୍ଧ ଉଦ୍ୟମରେ ଭାରତୀୟ ନେତାଙ୍କ ସକ୍ରିୟ ସାହାଯ୍ୟ ଆବଶ୍ୟକ ଏବଂ ସେଥିନିମନ୍ତେ ସରକାର ସେମାନଙ୍କ

ସହିତ ଆଲୋଚନା କରି ବିହିତ ନିଷତ୍ତି ଗ୍ରହଣ କରନ୍ତୁ ବୋଲି ତାଙ୍କର ମତ ଥିଲା । ଗାନ୍ଧିଜୀ, ନେହୁରୁ ଓ ମୌଲାନା ଆଜାଦ୍‌ଙ୍କ ସହିତ ସେ ଦୀର୍ଘ ଆଲୋଚନା କରିଥିଲେ । କଂଗ୍ରେସର ଦାବି ବିଷୟରେ ସରକାରଙ୍କ ମତିଗତି ପରିବର୍ତ୍ତନ ପାଇଁ ଉଦ୍ୟମ ମଧ୍ୟ କରିଥିଲେ । ଭାରତବାସୀଙ୍କୁ ବାସ୍ତବ ରାଜନୀତିକ-କ୍ଷମତା ଦେବାକୁ ତାଙ୍କ ନିବେଦନର କୌଣସି ଫଳ ଫଳିଲା ନାହିଁ ।

ଚିଆଂଗ କାଇସେକ୍ ଓ ତାଙ୍କ ପତ୍ନୀଙ୍କର ତାଜମହଲ-ଦର୍ଶନ ପାଇଁ ସରକାର ବ୍ୟବସ୍ଥା କରିଥିଲେ । ସେମାନଙ୍କ ସହିତ ଜବାହରଲାଲ ନେହୁରୁ ମଧ୍ୟ ଯିବେ ବୋଲି ମ୍ୟାଡାମ୍ ଚିଆଂଗଙ୍କ ଇଚ୍ଛାକ୍ରମେ ସରକାର ବିରକ୍ତ ହେଲେ ମଧ୍ୟ ବାଧ୍ୟହୋଇ ରାଜି ହୋଇଥିଲେ ।

## (୩୯)

## ସାର୍ ଷ୍ଟାଫୋର୍ଡ୍ କ୍ରିପ୍‌ସଙ୍କ ଭାରତ ଆଗମନ

୧୯୪୨ ମସିହା ମାର୍ଚ୍ଚ ୭ତାରିଖରେ ଜାପାନ ରେଂଗୁନ ସହରକୁ ଦଖଲ କରିନେଲା ପରେ ଭାରତୀୟ ନେତାମାନଙ୍କ ସହିତ ଯୁଦ୍ଧ-ସହଯୋଗ ବିଷୟରେ ଆଲୋଚନା ପାଇଁ ବ୍ରିଟେନ ଯୁଦ୍ଧକାଳୀନ ମନ୍ତ୍ରିମଣ୍ଡଳର ପ୍ରତିନିଧି ରୂପେ ସାର୍ ଷ୍ଟାଫୋର୍ଡ୍ କ୍ରିପ୍‌ସ ଆସିବେ ବୋଲି ସରକାରଙ୍କ ତରଫରୁ ଘୋଷଣାନାମା ପ୍ରକାଶ ପାଇଲା । କ୍ରିପ୍‌ସ ସାହେବ ଜଣେ ଜଣାଶୁଣା ସମାଜବାଦୀ ନେତା ଏବଂ ସେ ରୁଷ୍‌ରେ ବ୍ରିଟେନର ରାଷ୍ଟ୍ରଦୂତ ଥିବାବେଳେ ରୁଷ-ବ୍ରିଟେନ୍ ବନ୍ଧୁତ୍ୱ ସ୍ଥାପନ କରିଥିଲେ ବୋଲି ବିଶ୍ୱାସ ଯୋଗୁଁ ରାଜନୀତିକ ମହଲ ତଥା ବ୍ରିଟେନର ଜନସାଧାରଣଙ୍କ ମଧ୍ୟରେ ତାଙ୍କର ଖୁବ୍ ସୁନାମ ଥିଲା । ସେ ପୂର୍ବରୁ ମଧ୍ୟ ଭାରତ ଆସି କଂଗ୍ରେସ ନେତାଙ୍କ ସହିତ ଆଲୋଚନା କରିଥିଲେ । ହରିପୁରା କଂଗ୍ରେସ ଅଧିବେଶନର ଅବ୍ୟବହିତ ପୂର୍ବରୁ ସୁଭାଷ ବୋଷ ବିଲାତରେ ତାଙ୍କ ସହିତ ଆଲୋଚନା କରିଥିଲେ । ଜବାହରଲାଲ ନେହୁରୁ ଓ ଭୂଲାଭାଇ ଦେଶାଇଙ୍କ ସହିତ ତାଙ୍କର ଘନିଷ୍ଠତା ଥିଲା । ତାଙ୍କର ପ୍ରସ୍ତାବ ଥିଲା– ଯୁଦ୍ଧ ପରେ ଭାରତର ଔପନିବେଶିକ ସ୍ୱାଧୀନତା ଘୋଷଣା କରାଯାଇ ଏକ ସଂବିଧାନ-ଗଠନ ଆସେମ୍ବ୍ଲି ଗଠିତ ହେବ । ଚାହିଁଲେ ଭାରତୀୟ ଇଉନିୟନ୍‌ରୁ ସ୍ୱତନ୍ତ୍ର ହୋଇଯିବାର ଅଧିକାର ପ୍ରଦେଶଗୁଡ଼ିକର ରହିବ । ସଂବିଧାନଗଠନ ଆସେମ୍ବ୍ଲିରେ ଦେଶୀୟ ରାଜ୍ୟର ରାଜାମାନଙ୍କ ପ୍ରତିନିଧି ସଭ୍ୟ ରହିବେ, ତାଙ୍କ ଭିତରୁ କେହି ଚାହିଁଲେ, 'ଇଉନିଅନ'ରେ ନ ରହି ସ୍ୱତନ୍ତ୍ର ରହିପାରିବେ ।

ବର୍ତ୍ତମାନ ପାଇଁ କେନ୍ଦ୍ରରେ ଏକ୍‌ଜିକିଉଟିଭ କାଉନ୍‌ସିଲ୍‌ର ପୁନର୍ବିନ୍ୟାସ ହେବ, ରାଜନୀତିକ ଦଳଗୁଡ଼ିକର ପ୍ରତିନିଧିଙ୍କୁ ଶାସନ ଦାୟିତ୍ୱ ଦିଆଯିବ, କିନ୍ତୁ ଯୁଦ୍ଧ ଚାଲିଥିବା ପର୍ଯ୍ୟନ୍ତ ବଡ଼ଲାଟ ଓ ସେନାବାହିନୀର ମୁଖ୍ୟ ୱାଭେଲ୍‌ଙ୍କ କ୍ଷମତା ଅକ୍ଷୁଣ୍ଣ ରହିବ ।

ଯୁଦ୍ଧ ପରବର୍ତ୍ତୀ ଘୋଷଣା– କିଏ ଜିଣିବ, କିଏ ଜାଣିଛି– ଏକ ଦେଓ୍ୱାଳିଆ ବ୍ୟାଙ୍କର ଭବିଷ୍ୟତ-ଚେକ୍ ବୋଲି ଗାନ୍ଧିଜୀ ମତ ଦେଲେ ।

ପ୍ରଦେଶ ଚାହିଁଲେ 'ଇଉନିଅନ'ଠାରୁ ସ୍ୱତନ୍ତ୍ର ହୋଇଯିବ– ଏଇଠି ଲୁକ୍କାୟିତ ହୋଇ ରହିଲା ପାକିସ୍ଥାନ-ବୀଜ ।

ଦେଶୀୟ ରାଜ୍ୟର ରାଜାଙ୍କ ପ୍ରତିନିଧି ସଂବିଧାନ-ଗଠନ ଆସେମ୍ବ୍ଲିର ସଭ୍ୟ ହେବେ– ଲୋକଙ୍କ ପ୍ରତିନିଧି ନୁହଁନ୍ତି ।

ଭାରତୀୟ ସଭ୍ୟ ପ୍ରତିରକ୍ଷା-ବିଭାଗ ଦାୟିତ୍ୱରେ ରହିବେ କିନ୍ତୁ ଯୁଦ୍ଧ ପରିଚାଳନାର ଦାୟିତ୍ୱ ବଡ଼ଲାଟ ଓ ସେନାଧକ୍ଷଙ୍କର ହାତରେ ରହିବ । କ୍ରିପ୍‌ସ ସାହେବ କଂଗ୍ରେସ, ମୁସ୍‌ଲିମ୍ ଲିଗ୍, ହିନ୍ଦୁ ମହାସଭାର ନେତୃବୃନ୍ଦ, ଦେଶୀୟ ରାଜ୍ୟର ରାଜନ୍ୟବୃନ୍ଦ ଓ ସିନ୍ଧ୍ ପ୍ରଦେଶର ପ୍ରଧାନମନ୍ତ୍ରୀ ଆଲ୍ଲାବକ୍ସଙ୍କ ସହିତ ସାକ୍ଷାତ କରିବେ ବୋଲି ପୂର୍ବରୁ ବଡ଼ଲାଟଙ୍କ ନିକଟକୁ ଲେଖିଥିଲେ । ତଦ୍ୱାରା ଭାରତରେ ବହୁ ରାଜନୀତିକ ଦଳ ଅଛନ୍ତି, କଂଗ୍ରେସ ଏକମାତ୍ର ଭାରତୀୟଙ୍କ ପ୍ରତିନିଧି ନୁହେଁ ବୋଲି ଇଂରେଜ-ସରକାର ଜଣାଇବାକୁ ଚାହିଁଲେ ।

କ୍ରିପ୍‌ସ-ପ୍ରସ୍ତାବ ଗୃହୀତ ହେଲା ନାହିଁ । କେବଳ କଂଗ୍ରେସର ଅନ୍ୟତମ ତୁଂଗନେତା ରାଜଗୋପାଳାଚାରୀ ପ୍ରସ୍ତାବକୁ ସମର୍ଥନ କରିଥିଲେ । ହିଂଦୁ-ମୁସଲମାନ ସମସ୍ୟାର ସମାଧାନ ନ ହେବା ପର୍ଯ୍ୟଂତ ଭାରତୀୟ ସ୍ୱାଧୀନତା ପ୍ରାପ୍ତି ଅସଂଭବ ବୋଲି ତାଙ୍କର ମତ ଥିଲା । ମୁସଲିମ୍ ଲିଗ୍‌ର ଦାବୀକୁ ସମର୍ଥନ କରି ମାଂଦ୍ରାଜ କଂଗ୍ରେସ ବିଧାନସଭା ଦଳରେ ସେ ଏକ ପ୍ରସ୍ତାବ ଆଗତ କଲେ ଓ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ପଦରୁ ଇସ୍ତଫାଦେଲେ ।

'କ୍ରିପ୍‌ସ-ପସ୍ତାବ' ଚର୍ଚ୍ଚିଲ ସାହେବଙ୍କର ଏକ ଚାଲ୍ ଥିଲା । ଭାରତର ନେତାମାନଙ୍କ ସହିତ ଆଲୋଚନା ପାଇଁ ଇଂରେଜ ସରକାରଙ୍କ ଆନ୍ତରିକତା ଥିଲା ବୋଲି ଏତଦ୍ୱାରା ସେ ବିଶ୍ୱବାସୀଙ୍କୁ ଜଣାଇବାକୁ ଚାହିଁଥିଲେ ।

ଚର୍ଚ୍ଚିଲ ସାହେବ ଥିଲେ କାଠ-ସର୍ଦ୍ଦାର । ଭାରତୀୟ ସ୍ୱାଧୀନତା ଦାବିର ସେ ଘୋର ବିରୋଧୀ । ଗାନ୍ଧିଜୀ ଓ କଂଗ୍ରେସକୁ ଯେକୌଣସିମତେ ଦମନ କରିବାକୁ ହେବ ବୋଲି ୧୯୩୦ ମସିହାରେ ସେ ମତ ବ୍ୟକ୍ତ କରିଥିଲେ । ବ୍ରିଟିଶ ସାମ୍ରାଜ୍ୟର ମୁକୁଟମଣି ଭାରତକୁ ସ୍ୱାଧୀନତା ଦେବାର ପ୍ରଶ୍ନ ଉଠୁନାହିଁ ବୋଲି ତୁହାଇ ତୁହାଇ ସେ କହୁଥିଲେ । ଲିନ୍‌ଲିଥଗୋ ସାହେବ ତହୁଁ ବଳି । ସେ ଉଭୟ ଶରୀର ଓ ବୁଦ୍ଧିରେ ସ୍ଥୂଳ ଥିଲେ ବୋଲି ଜବାହରଲାଲ ନେହରୁ ଲେଖିଛନ୍ତି ।

## (୪୦)

## ଭାରତଛାଡ଼ ଆନ୍ଦୋଳନ

ଭାରତର ଦ୍ୱାରଦେଶରେ ଯୁଦ୍ଧ ପହଁଚି ଯାଇଥିଲେ ମଧ୍ୟ ବ୍ରିଟିଶ ସରକାର ଭାରତର ସ୍ୱାଧୀନତା ଦାବିକୁ କୌଣସିମତେ ଗ୍ରହଣ କରିବାକୁ ରାଜି ନୁହଁନ୍ତି ବୋଲି ସ୍ପଷ୍ଟ ହୋଇଗଲା । ପରେ ଦେଶବାସୀଙ୍କ ମନରେ ବ୍ରିଟିଶ-ବିରୋଧୀ ମନୋଭାବ ପ୍ରବଳ ହୋଇଉଠିଲା । ଯୁଦ୍ଧ ସମୟରେ ବ୍ରିଟିଶ ସରକାରଙ୍କ ଯୁଦ୍ଧ-ଉଦ୍ୟମକୁ ବ୍ୟାହତ କଲାପରି କୌଣସି ଆନ୍ଦୋଳନ ଅନୁଚିତ ବୋଲି ଏପର୍ଯ୍ୟନ୍ତ ଗାନ୍ଧିଜୀଙ୍କର ମତ ଥିଲା । କ୍ରିପ୍ସ-ପ୍ରସ୍ତାବ ପରେ ସେ ମତରେ ପରିବର୍ତ୍ତନ ଘଟିଲା । ଭାରତରେ ବ୍ରିଟିଶ ଶକ୍ତିର ଉପସ୍ଥିତି ଜାପାନକୁ ଯୁଦ୍ଧପାଇଁ ଆହ୍ୱାନ, ସୁତରାଂ ବ୍ରିଟିଶ-ଶକ୍ତି ହଟିଯିବା ଉଚିତ, ତଥାପି ଯଦି ଜାପାନ ଆକ୍ରମଣ କରେ ସ୍ୱାଧୀନ ଭାରତ ଅଧିକ ସାହସର ସହିତ ତା'ର ସମ୍ମୁଖୀନ ହେବ ବୋଲି ଗାନ୍ଧିଜୀ 'ହରିଜନ' ପତ୍ରିକାରେ ମତପ୍ରକାଶ କଲେ । ବ୍ରିଟିଶ-ଶାସନଠାରୁ ଅରାଜକତାକୁ ସେ ବେଶୀ ପସନ୍ଦ କରିବେ ବୋଲି ଘୋଷଣା କଲେ ।

ଗାନ୍ଧିଜୀଙ୍କ ସେକ୍ରେଟାରୀ ଓ ମହାଦେବ ଦେଶାଇଙ୍କ ପରାମର୍ଶ କ୍ରମେ ମିସ୍ ମିରାବେନ୍ ବଡ଼ଲାଟଙ୍କ ସହିତ ଆଲୋଚନା କରବାପାଇଁ ଦିଲ୍ଲୀ ଗଲେ । ଯେହେତୁ ଗାନ୍ଧିଜୀ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିବେ ବୋଲି ଘୋଷଣା କରିଛନ୍ତି, ତେଣୁ ଏ ସାକ୍ଷାତ୍‌କାରର କୌଣସି ଆବଶ୍ୟକତା ନାହିଁ ଯୁକ୍ତିରେ ବଡ଼ଲାଟ ତାଙ୍କୁ ଫେରାଇଦେଲେ ।

ଜୁଲାଇ ୧୪ ତାରିଖରେ କଂଗ୍ରେସ କାଯ୍ୟକାରୀ କମିଟିର 'ଭାରତଛାଡ଼' ଚିଠା ପ୍ରସ୍ତାବ ଅଗଷ୍ଟ ୭ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିରେ ପେଶ୍ ହୋଇ ୮ ତାରିଖରେ ବିପୁଳ ସମର୍ଥନରେ ଗୃହୀତ ହୋଇଥିଲା । କେବଳ ମୁଷ୍ଟିମେୟ କମ୍ୟୁନିଷ୍ଟସଭ୍ୟ ଏହାର ବିରୋଧ କରିଥିଲେ । ଗାନ୍ଧିଜୀ 'କର ବା ମର' ଧ୍ୱନି ଦେଲେ ।

### ୧୯୪୨ର ଭାରତଛାଡ଼ ପ୍ରସ୍ତାବ –

ଯୁଦ୍ଧ ପରିସ୍ଥିତି ଓ ବ୍ରିଟିଶ ସରକାରଙ୍କ ପ୍ରତିନିଧିଙ୍କ ମତାମତ ତଥା ଭାରତ ଭିତରେ ଓ ବାହାରେ ପ୍ରକାଶ ପାଇଥିବା ମତାମତକୁ ନିଖିଳଭାରତ କଂଗ୍ରେସକମିଟି ଗୁରୁତ୍ୱର ସହିତ ବିଚାର କରିଛି । କଂଗ୍ରେସ କାର୍ଯ୍ୟକାରୀ କମିଟିର ପ୍ରସ୍ତାବକୁ ନିଖିଳ ଭାରତ କଂଗ୍ରେସ କମିଟି ଗ୍ରହଣ କରୁଛି ଏବଂ ଭାରତ ତଥା ଜାତିସଂଘର ମଙ୍ଗଳପାଇଁ ଭାରତରେ ବ୍ରିଟିଶ ଶାସନର ଅବସାନ ଜରୁରୀ ହୋଇପଡ଼ିଛି ବୋଲି ଉପଲବ୍ଧି କରୁଛି । ବ୍ରିଟିଶ

ଶାସନ ଚାଲୁରହିବାଦ୍ୱାରା ଭାରତର ପ୍ରତିରକ୍ଷାଶକ୍ତି ଦୁର୍ବଳ ହୋଇଯାଉଛି ଏବଂ ସେ ଜାତିସଂଘର ଉଦ୍ଦେଶ୍ୟକୁ ସାହାଯ୍ୟ କରିପାରୁନାହିଁ ।

ରୁଷ ଓ ଚୀନସହିତ ଯୁଦ୍ଧର ପରିଣତି ଖରାପ ଆଡ଼କୁ ଗତିକରୁଛି ଏବଂ ସ୍ୱାଧୀନତା ରକ୍ଷାପାଇଁ ରୁଷ ଓ ଚୀନବାସୀଙ୍କ ବୀରତ୍ୱକୁ କମିଟି ଉଚ୍ଚପ୍ରଶଂସା କରୁଛି । ମିତ୍ରଶକ୍ତିର ନୀତିର ପରୀକ୍ଷା ଆବଶ୍ୟକ ହୋଇପଡ଼ିଛି, ଏହି ନୀତିକୁ ଚାଲୁରଖିବାଦ୍ୱାରା କୃତକାର୍ଯ୍ୟତା କେବେ ସଂଭବନୁହେଁ ବୋଲି ପରିଷ୍କାର ହୋଇଯାଇଛି । ଏ ନୀତି ସ୍ୱାଧୀନତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ନୁହେଁ । ଏହା ଅନ୍ୟଦେଶକୁ ପରାଧୀନ କରିବା ସାମ୍ରାଜ୍ୟବାଦର ନଗ୍ନ ସ୍ୱରୂପ । ଭାରତର ସ୍ୱାଧୀନତା ପ୍ରଶ୍ନ ଉପରେ ହିଁ ବ୍ରିଟେନ୍ ଓ ଜାତିସଂଘର ବିଚାର, ଏହା ଏସିଆ ଓ ଆଫ୍ରିକାର ପରାଧୀନ ଦେଶବାସୀଙ୍କ ମନରେ ଆଶା ଓ ବିଶ୍ୱାସ ସଂଚାର କରିବ । ସ୍ୱାଧୀନତା ଓ ଗଣତନ୍ତ୍ରର ବିକାଶ ନିମନ୍ତେ ଭାରତରୁ ବ୍ରିଟିଶ ଶାସନର ଅବସାନ ଏକାନ୍ତ ଜରୁରୀ । ଯୁଦ୍ଧର ଭବିଷ୍ୟତ ମଧ୍ୟ ଏହା ଉପରେ ନିର୍ଭର କରେ । ସ୍ୱାଧୀନତା ପାଇଲେ, ଭାରତ ତାର ସମସ୍ତ ଶକ୍ତି ବିନିଯୋଗ କରି 'ନାଜି'ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବ । ଏହାଦ୍ୱାରା ଯୁଦ୍ଧର ଗତି ବଦଳିଯିବ । ସାମ୍ରାଜ୍ୟବାଦ ଚାଲିଥିବା ପର୍ଯ୍ୟନ୍ତ ଜାତିସଂଘର ଉଦ୍ଦେଶ୍ୟ କେବେ ସାଧିତ ହେବନାହିଁ । ବ୍ରିଟିଶ ଶାସନର ଅବସାନ ଜରୁରୀ, ଭବିଷ୍ୟତର ପ୍ରତିଶ୍ରୁତିରେ ସମାଧାନ ନିହିତ ନୁହେଁ ।

ସେହେତୁ, ବ୍ରିଟିଶ ଶାସକବର୍ଗ ଅବିଳମ୍ବେ ଭାରତ ଛାଡ଼ୁ ବୋଲି ଏହି କମିଟି ଦାବି କରୁଛି । ଭାରତ ସ୍ୱାଧୀନ ହେଲାପରେ ସବୁ ରାଜନୀତିକ ଦଳମାନଙ୍କ ସହଯୋଗରେ ଏକ ଅସ୍ଥାୟୀ ସରକାର ଗଠିତ ହେବ ଏବଂ ଏହି ସରକାର ଜାତିସଂଘର ସହଯୋଗୀ ହେବ । ଏହି ସରକାର ତାର ସ୍ୱାଧୀନତା ରକ୍ଷାନିମନ୍ତେ ସମସ୍ତ ଶକ୍ତି ପ୍ରୟୋଗ କରି ଯୁଦ୍ଧ କରିବ । ଏହି ସରକାର ଏକ ଶାସନ-ବିଧାୟକ ସଭା ଗଠନ କରିବ, ଯାହାକି ଦେଶର ସମ୍ବିଧାନ ଗଠନ କରିବ ।

ଭାରତର ସ୍ୱାଧୀନତା ସଂଗେ ସଂଗେ ବର୍ମା, ମାଳୟ, ଇଣ୍ଡୋଚିନ୍, ଡଚ-ଇଣ୍ଡିଜ, ଇରାନ, ଇରାକ୍ ପ୍ରଭୃତି ଏସିଆର ପରାଧୀନ ଦେଶଗୁଡ଼ିକର ସ୍ୱାଧୀନତା ମଧ୍ୟ ଘୋଷିତ ହେବା ଉଚିତ ।

ପୃଥିବୀର ଶାନ୍ତି, ନିରାପତ୍ତା ଓ ପ୍ରଗତି ନିମନ୍ତେ ସବୁ ସ୍ୱାଧୀନ ଦେଶମାନଙ୍କୁ ନେଇ ଏକ ଫେଡେରେସନ୍ ଗଠନଦ୍ୱାରା ହିଁ ଦଳିତ, ଶୋଷିତ ଶ୍ରେଣୀର ଉନ୍ନତି ବିଧାନ ସମ୍ଭବ ହେବ ଏବଂ ନିରସ୍ତ୍ରୀକରଣ ନୀତି ଅବଲମ୍ବନଦ୍ୱାରା ସାମରିକ ଆବଶ୍ୟକତା ରହିବ ନାହିଁ । ସ୍ୱାଧୀନ ଭାରତ ଖୁସୀରେ ଏହି ଫେଡେରେସନ୍‌ର ସଭ୍ୟ ହେବ ।

ଦୁଃଖର କଥା ଯେ ଯୁଦ୍ଧର ଭୟାବହ ପରସ୍ଥିତି ସତ୍ତ୍ୱେ, ପୃଥିବୀର ବହୁଦେଶ ଏପରି ଏକ ଫେଡେରେସନ୍ ଗଠନର ଚିନ୍ତା କରୁନାହାଁନ୍ତି । ଭାରତକୁ ସ୍ୱାଧୀନତା ଦେଇ ତା'ର ପ୍ରତିରକ୍ଷା ବ୍ୟବସ୍ଥାକୁ ଦୃଢ଼ କରିବା ସଂଗେ ସଂଗେ ଚୀନ ଓ ରୁଷକୁ

ସାହାଯ୍ୟ କରିବା ବିଷୟ ବ୍ରିଟିଶ ସରକାର ଚିନ୍ତା କରୁନଥିବା ଦୁଃଖର କଥା । ବ୍ରିଟିଶ ସରକାର ଓ ଜାତିସଂଘ ଭାରତର ନିବେଦନକୁ ଏ ପର୍ଯ୍ୟନ୍ତ ଗ୍ରହଣ କରିନଥିବା ଅସହ୍ୟ ହୋଇପଡ଼ିଛି ।

ପୃଥିବୀର ପରିସ୍ଥିତି ବିଚାରରେ ଆଉଥରେ ଜାତିସଂଘ ଓ ବ୍ରିଟେନକୁ ଏହି କମିଟି ନିବେଦନ କରୁଛି, ଭାରତର ସ୍ୱାଧୀନତା ଘୋଷଣାପାଇଁ । ତା ନହେଲେ, ସ୍ୱାଧୀନତା ହାସଲ ନିମନ୍ତେ, ଗତ ୨୦ବର୍ଷର ଅହିଂସ ଆନ୍ଦୋଳନର ଶକ୍ତିକୁ ଭିତ୍ତିକରି ଏକ ବ୍ୟାପକ ଗଣ-ଅହିଂସ ଆନ୍ଦୋଳନ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଆରମ୍ଭ ହେବ । ସେହି ଆନ୍ଦୋଳନର ନେତୃତ୍ୱ ନେବାକୁ ଏବଂ ଆନ୍ଦୋଳନର ମାର୍ଗ ନିରୂପଣ କରିବାକୁ ଗାନ୍ଧିଜୀଙ୍କୁ ଅନୁରୋଧକରୁଛି ।

ଏହି ଆନ୍ଦୋଳନ ଫଳରେ ଯେଉଁ କଷ୍ଟ, ଦୁଃଖ ଓ ତ୍ୟାଗ ନିହିତ ଅଛି, ତାହା ସାହସର ସହିତ ବରଣ କରିବାକୁ ଦେଶବାସୀଙ୍କୁ ଏହି କମିଟି ଆହ୍ୱାନ ଦେଉଛି । 'ଅହିଂସା' ଏହି ଆନ୍ଦୋଳନର ମୂଳମନ୍ତ୍ର ବୋଲି କମିଟି ଦେଶବାସୀଙ୍କୁ ଚେତାଇ ଦେଉଛି । ହୁଏତ ହୋଇପାରେ ସମୟ ଆସିବ ଯେତେବେଳେ କି କାର୍ଯ୍ୟପନ୍ଥା ସେମାନଙ୍କ ନିକଟରେ ପହଁଚି ନ ପାରେ, ସେତେବେଳେ ଆନ୍ଦୋଳନରେ ଯୋଗ ଦେଉଥିବା ପ୍ରତ୍ୟେକ ଶକ୍ତି ନିଜର ବିବେକ ଅନୁଯାୟୀ କାର୍ଯ୍ୟକରିବେ । ସ୍ୱାଧୀନତା ହାସଲ ନ ହେବା ପର୍ଯ୍ୟନ୍ତ ବିଶ୍ରାମ ନାହିଁ । କମିଟି ପରିଷ୍କାର କରିଦେବାକୁ ଚାହେଁ ଯେ ସ୍ୱାଧୀନତାର କ୍ଷମତା ଦେଶବାସୀଙ୍କର, କଂଗ୍ରେସର ନୁହେଁ ।

## (୪୧)

## କଂଗ୍ରେସ ନେତୃବୃନ୍ଦ ବନ୍ଦୀହେଲେ

କେଉଁଦିନଠାରୁ ଆନ୍ଦୋଳନ ଆରମ୍ଭ ହେବ ବା କାର୍ଯ୍ୟକ୍ରମ ଗୃହୀତ ହେବ ତାହା ପ୍ରସ୍ତାବରେ ନଥିଲା । ଏହା ଥିଲା ବ୍ରିଟିଶ ସରକାର ଓ ପୃଥିବୀର ଜନମତକୁ ଏକ ନିବେଦନ । ହଠାତ୍ ସରକାର କଂଗ୍ରେସ ବିରୁଦ୍ଧରେ କୌଣସି ପଦକ୍ଷେପ ନେବେ ବୋଲି ଗାନ୍ଧିଜୀ ଭାବିନଥିଲେ । ବଡ଼ଲାଟଙ୍କ ସହିତ ଆଲୋଚନା ପରେ କାର୍ଯ୍ୟକ୍ରମ ସ୍ଥିର କରିବାକୁ ଗାନ୍ଧିଜୀ ସ୍ଥିର କରିଥିଲେ, କିନ୍ତୁ କଂଗ୍ରେସ ନେତାମାନଙ୍କୁ ଗିରଫ କରି ଅଗଷ୍ଟ ୯ତାରିଖରେ ସରକାର ଏ ଆନ୍ଦୋଳନ ଆରମ୍ଭ କରିଦେଲେ ।

ଅଗଷ୍ଟ ୯ତାରିଖ ପ୍ରତ୍ୟୁଷରେ ମୌଲାନା ଆଜାଦ୍, ଜବାହରଲାଲ ନେହୁରୁ, ଅଶୋକ ମେହେଟ୍ଟା, ଶଙ୍କର ରାଓ ଦେଓ, ଆସଫ ଅଲ୍ଲୀ, ଡକ୍ଟର ସୟଦ୍ ମାହମୁଦ୍,

ସରୋଜିନୀ ନାଇଡୁ ପ୍ରମୁଖଙ୍କୁ ଗିରଫ କରି ବମ୍ବେର 'ଭିକ୍ଟୋରିଆ ଟର୍ମିନସ' ଷ୍ଟେସନଠାରୁ ଏକ ସ୍ୱତନ୍ତ୍ର ରେଳଗାଡ଼ିରେ ପ୍ରଥମେ 'ପୁନା' ପର୍ଯ୍ୟନ୍ତ ନିଆଗଲା । ପୁନାରେ ଗାନ୍ଧିଜୀ ଓ ସରୋଜିନୀ ନାଇଡୁଙ୍କୁ ଓହ୍ଲାଇ ଗାଡ଼ି ଚାଲିଲା ଅହମେଦ୍‌ବାଦ୍ ନଗର ।

ଆଗା ଖାଁ ପ୍ରାସାଦରେ ଅଟକବନ୍ଦୀ ରୂପେ ରହିଲେ ଗାନ୍ଧିଜୀ, କସ୍ତୁରବା, ମହାଦେବ ଦେଶାଇ ଓ ସରୋଜିନୀ ନାଇଡୁ । ମୌଲାନା ଆଜାଦ୍, ଜବାହରଲାଲ, ସର୍ଦ୍ଦାର ପଟେଲ, ପ୍ରଫୁଲ୍ଲ ଘୋଷ, ଆସଫ ଅଲ୍ଲୀ, ଶଙ୍କର ରାଓ ଦେଓ, ସୟଦ ମହମ୍ମଦ, ହରେକୃଷ୍ଣ ମହତାବ, ଗୋବିନ୍ଦ ବଲ୍ଲଭ ପନ୍ଥ, ପ୍ରଫୁଲ୍ଲ ଘୋଷ, ଆଚାର୍ଯ୍ୟ କୃପାଳିନୀ ଆହମେଦାବାଦ୍ ନଗର ଜେଲ୍‌ରେ ଅଟକ ରହିଲେ । ବିଭିନ୍ନ ପ୍ରଦେଶର କଂଗ୍ରେସ ନେତାମାନେ ଗିରଫ ହେଲେ । କଂଗ୍ରେସକୁ ବେଆଇନ ଘୋଷଣା କରି ତା'ର ସମ୍ପତ୍ତି ବାଜ୍ୟାପ୍ତ କରାଗଲା ।

ଦେଶବ୍ୟାପୀ ଜନତା ଉତ୍‌କ୍ଷିପ୍ତ ହୋଇଉଠିଲେ । 'କର ବା ମର' ଧ୍ୱନିରେ ଆକାଶ ପ୍ରକମ୍ପିତ ହେଲା । ରେଳପଥ, ପୋଷ୍ଟ ଓ ଟେଲିଗ୍ରାଫ ସଂସ୍ଥା, ସରକାରୀ ଟ୍ରେଜେରି, ପୁଲିସ ଷ୍ଟେସନ ଉପରେ ବିଭିନ୍ନ ସ୍ଥାନରେ ଜନତାର ଆକ୍ରମଣ ହେଲା । ସରକାରଙ୍କ ତରଫରୁ ଲଠିମାଡ଼, ଲୁହବୁହା ଗ୍ୟାସ ଓ ଉଡ଼ାଜାହାଜରୁ ଗୁଳିମାଡ଼ ଫଳରେ ବହୁ ଲୋକଙ୍କର ମୃତ୍ୟୁ ଆନ୍ଦୋଳନକୁ ଆହୁରି ତେଜେଇଦେଲା । ମୃତ୍ୟୁର ଭୟ ରହିଲା ନାହିଁ । ବହୁ ସ୍ଥାନରେ ପୁଲିସ ଓ ସେନାବାହିନୀ ସହିତ ଜନତାର ସଂଘର୍ଷ ହେଲା । ଶ୍ରମିକ ଧର୍ମଘଟରେ ବହୁ କଳକାରଖାନା ବନ୍ଦହୋଇଗଲା । ଜାତୀୟ ସରକାର ଗଠନ ଦାବିରେ ଟାଟା ଇସ୍ପାତ କାରଖାନାର ଶ୍ରମିକଗଣ ଧର୍ମଘଟ କଲେ । ଆହମେଦାବାଦର ଲୁଗାକଳ ଶ୍ରମିକଗଣଙ୍କ ଧର୍ମଘଟ ୩ମାସ ଧରି ଚାଲିଲା । ମେଦିନପୁରର ତାମଲୁକଠାରେ ସତୀଶ ସାମନ୍ତଙ୍କ ନେତୃତ୍ୱରେ ଜାତୀୟ ସରକାର ପ୍ରତିଷ୍ଠିତ ହୋଇ ଦୁଇବର୍ଷ ଚାଲିଲା । ମହାରାଷ୍ଟ୍ରର ସାତାରାଠାରେ ଜାତୀୟ ସରକାର ଏବଂ ଓଡ଼ିଶାର ତାଳଚେରରେ ଚାଷୀ-ମୂଲିଆରାଜ ପ୍ରତିଷ୍ଠିତ ହେଲା ।

ଅଗଷ୍ଟ ୯ତାରିଖରେ ଓଡ଼ିଶାର ବହୁ କଂଗ୍ରେସ ନେତାଙ୍କୁ ଗିରଫ କରି ନିଆଗଲା । ଐତିହାସିକ ଜଗନ୍ନାଥ ପଟ୍ଟନାୟକଙ୍କ ମତରେ, ଅଧ୍ୟକ୍ଷଙ୍କ ଅଫିସ ପୋଡ଼ିଦେଇ ରେଭେନ୍ସା କଲେଜ ଛାତ୍ରଗଣ ଆନ୍ଦୋଳନ ଆରମ୍ଭ କରିଥିଲେ । ତହିଁପରଦିନ ସକାଳେ କଲେଜ ସାମନା ଗୁଜରାଟି ଜଳଖିଆ ଦୋକାନରେ ମୁଁ ଓ ସୁରଜ୍‌ମଲ୍ଲ ସାହା ଗିରଫ ହୋଇ କଟକ ଜେଲ୍‌ରେ ରହିଲୁ । ଅଗଷ୍ଟ ଆନ୍ଦୋଳନରେ ଦେଶବ୍ୟାପୀ ଛାତ୍ରଙ୍କ ଭୂମିକାକୁ ଜବାହରଲାଲ ନେହୁରୁ ଓ ବହୁ ଐତିହାସିକ ପ୍ରଶଂସା କରିଛନ୍ତି । ଛାତ୍ରସଂଘର ନେତୃତ୍ୱରେ ବହୁ ଛାତ୍ର ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି କାରାବରଣ କରିଥିଲେ ।

ବାଲେଶ୍ୱର ଜିଲ୍ଲାର ଇରମ୍‌ଠାରେ ପୁଲିସ ଗୁଳିରେ ଏକାଦିନରେ ୩୫ଜଣଙ୍କର ମୃତ୍ୟୁ, ଦ୍ୱିତୀୟ ଜାଲିଆନାବାଗ ହତ୍ୟାକାଣ୍ଡ ରୂପେ ଗଣ୍ୟ । ପୁଲିସ ଗୁଳିରେ ବାଲେଶ୍ୱର ଜିଲ୍ଲାର ଲୁଣିଆଠାରେ ୮ଜଣ, କଟକର କାଇପଡ଼ା-କଳାମାଟିଆରେ ୪ଜଣ, କୋରାପୁଟ ଜିଲ୍ଲାର ମାତିଲି ଗ୍ରାମରେ ୬ ଜଣ, ଢେଙ୍କାନାଳରେ ୫ ଜଣ, ନୟାଗଡ଼ରେ ୪ ଜଣ, ନୀଳଗିରିରେ ଦୁଇଜଣ, ତାଳଚେରରେ ୬ଜଣ, ନିମାପଡ଼ାରେ ଜଣେ ପ୍ରାଣ ହରାଇଥିଲେ ବୋଲି ଜଗନ୍ନାଥ ପଟ୍ଟନାୟକ ଲେଖିଛନ୍ତି । କୋରାପୁଟର ଲକ୍ଷ୍ମଣ ନାଏକଙ୍କୁ ଜଣେ ସରକାରୀ କର୍ମଚାରୀ ହତ୍ୟା ଅଭିଯୋଗରେ ବ୍ରହ୍ମପୁର ଜେଲରେ ୧୯୪୩ ମସିହା ମାର୍ଚ୍ଚ ମାସ ୨୯ତାରିଖରେ ଫାଶୀ ଦିଆଯାଇଥିଲା । ବହୁ ସ୍ଥାନରେ ସରକାରୀ କଳ ଅଚଳ ହୋଇପଡ଼ିଲା ।

ଏହି ଆନ୍ଦୋଳନରେ ୮୧,୮୩୬ ଆନ୍ଦୋଳନକାରୀଙ୍କୁ ଗିରଫ କରାଯାଇଥିଲା ଓ ୨୦୮ ପୁଲିସ୍ ଥାନା, ୩୩୨ ରେଳଷ୍ଟେସନ, ୯୪୫ ପୋଷ୍ଟଅଫିସ୍ ଧ୍ୱଂସ ପାଇଥିଲା ଓ ୬୨୪ଟି ବୋମା ଫୁଟିଥିଲା ବୋଲି ସରକାରୀ ହିସାବରୁ ପ୍ରକାଶ । ସଂଖ୍ୟା ନିଶ୍ଚୟ ଏହାଠାରୁ ବେଶୀ ହୋଇଥିବ । ଯୁଦ୍ଧପରେ ଭାରତରେ ବ୍ରିଟିଶ ଶାସନକୁ ଚଳାଇ ରଖିବା କଷ୍ଟକର ହେବ ବୋଲି ବଡ଼ଲାଟ ଓ୍ୱାଭେଲ ୧୯୪୩ ମସିହା ଅକ୍ଟୋବର ୨୪ ତାରିଖରେ ବ୍ରିଟେନର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କୁ ପତ୍ର ଲେଖିଥିଲେ । ଏହି ଆନ୍ଦୋଳନରେ ଅତିକମ୍‌ରେ ୧୦ହଜାର ଲୋକ ପ୍ରାଣବଳି ଦେଇଥିଲେ । ସରକାରୀ କର୍ମଚାରୀ, ମୁସଲିମ୍ ଲିଗ୍, ଗଡ଼ଜାତଗୁଡ଼ିକର ରାଜନ୍ୟବର୍ଗ ଓ ଜମିଦାର ଗୋଷ୍ଠୀ ସରକାରଙ୍କ ସହିତ ରହିଥିଲେ । ଭାରତୀୟ ସୈନ୍ୟବାହିନୀ ଓ ପୁଲିସ ଫୌଜ ଥିଲେ ବ୍ରିଟିଶ ସରକାରଙ୍କ ପ୍ରଧାନ ସହାୟକ ଓ ଦମ୍ଭ । ବ୍ରିଟିଶ ପାର୍ଲିଆମେଣ୍ଟରେ ଚର୍ଚ୍ଚିଲ ଭାରତୀୟ ସୈନ୍ୟବାହିନୀ ଓ ପୁଲିସ୍ ଫୌଜର ଉଚ୍ଚ ପ୍ରଶଂସା କରିଥିଲେ । ସରକାର ଏହି ଆନ୍ଦୋଳନକୁ ଦମନ କରିଛନ୍ତି ବୋଲି ଗର୍ବ ପ୍ରକାଶ କରିଥିଲେ ।

୧୯୩୯ ମସିହାରେ ଭାରତୀୟ ସେନାବାହିନୀର ସଂଖ୍ୟା ଥିଲା ୧ଲକ୍ଷ ୮୯ହଜାର । ୧୯୪୫ ମସିହା ବେଳକୁ ସଂଖ୍ୟା ୨୫ଲକ୍ଷରୁ ଉର୍ଦ୍ଧ୍ୱହେଲା । ନିରସ୍ତ୍ର, ଅହିଂସ ମୁକ୍ତିସଂଗ୍ରାମୀ କିପରିଭାବେ ଏହି ସଶସ୍ତ୍ର ବାହିନୀର ସମ୍ମୁଖୀନ ହେବ ? କେବଳ ସାହସ ଓ ଜୀବନବଳି ଦେବାର ପ୍ରତିଜ୍ଞା ତା'ର ଏକମାତ୍ର ଅସ୍ତ୍ର ।

୧୯୪୨ ମସିହା ଶେଷଭାଗକୁ ଆନ୍ଦୋଳନ ଧିମେଇଯାଇଥିଲା । ଜୟପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲି; ରାମମନୋହର ଲୋହିଆଙ୍କ ସମେତ ସମାଜବାଦୀଦଳର କେତେକ ନେତା ଓ ଫରୱାର୍ଡ଼-ବ୍ଲକ୍‌ର କେତେକ ସଭ୍ୟ ଆତ୍ମଗୋପନ କରି ବିଭିନ୍ନ ସ୍ଥାନରେ ଆନ୍ଦୋଳନ ଚଳାଇଥିଲେ ।

(୪୨)

## ଗାନ୍ଧିଜୀଙ୍କ ଅନଶନ

ଆତ୍ମଶୁଦ୍ଧି ନିମନ୍ତେ ଗାନ୍ଧିଜୀ ଅନଶନ ପାଳନ କରିବାକୁ ନିଷତ୍ତି ନେଇଛନ୍ତି ବୋଲି ୧୯୪୩ ମସିହା ଫେବୃଆରୀ ମାସରେ ବଡ଼ଲାଟଙ୍କ ନିକଟକୁ ପତ୍ର ଲେଖିଲେ । ଏହାର ଦୁଇଟି କାରଣ ଥାଇପାରେ ବୋଲି ମୌଲାନା ଆଜାଦ୍ ତାଙ୍କ 'India Wins Freedom' ପୁସ୍ତକରେ ଲେଖିଛନ୍ତି । ତାହା ହେଲା ଯେ, ବ୍ରିଟିଶ ସରକାର କଂଗ୍ରେସ୍ ନେତାମାନଙ୍କୁ ଏତେଶୀଘ୍ର ଗିରଫ କରିନେବେ ବୋଲି ସେ ଭାବିନଥିଲେ । ଅହିଂସ ଉପାୟରେ ଗଣଆନ୍ଦୋଳନର ପରିଚାଳନା କରିବାକୁ ସେ ସମୟ ପାଇବେ ବୋଲି ଆଶା କରିଥିଲେ । ଆନ୍ଦୋଳନ ହିଂସ୍ର ହୋଇଯିବା ପାଇଁ ସେ ଦାୟୀ ଏବଂ ସେହି ଭୁଲ୍ ପାଇଁ ସେ ଅନସନ ପାଳନ କରିବାକୁ ସ୍ଥିର କଲେ । ପରିଣତ ବୟସରେ ଅନଶନ ତାଙ୍କ ମୃତ୍ୟୁର କାରଣ ହୋଇପାରେ ବୋଲି ବିଚାରରେ ତାଙ୍କ ଶରୀର ଦାହ ପାଇଁ ସରକାର ଚନ୍ଦନକାଠ ଗଚ୍ଛିତ କରି ରଖିଥିଲେ ବୋଲି ମୌଲାନା ଆଜାଦଙ୍କ ପୁସ୍ତକରୁ ଜଣାପଡ଼େ । କିନ୍ତୁ ସରକାରଙ୍କ ବିଚାର ଅସିଦ୍ଧ ବୋଲି ପ୍ରମାଣିତ ହେଲା । ନିଜର ଅସୀମ ମନୋବଳରେ ୨୧ ଦିନ ଅନଶନ ପରେ ସେ ତାହା ଭଙ୍ଗକଲେ । ଏହି ଉପବାସ ସମୟରେ କଂଗ୍ରେସ ନେତା ଡାକ୍ତର ବିଧାନ ଚନ୍ଦ୍ର ରାୟ ସରକାରଙ୍କର ଅନୁମତି କ୍ରମେ ଗାନ୍ଧିଜୀଙ୍କ ସହିତ ରହି ତାଙ୍କ ସ୍ୱାସ୍ଥ୍ୟ କଥା ବୁଝୁଥିଲେ ।

ଆଗା ଖାଁ ପ୍ରାସାଦରେ ମୃତ୍ୟୁ ଘଟିଲା କସ୍ତୁରବା ଗାନ୍ଧିଙ୍କର । ଗାନ୍ଧୀଜୀଙ୍କ ପାଇଁ ଗଚ୍ଛିତ ହୋଇଥିବା ଚନ୍ଦନକାଠରେ ତାଙ୍କ ଶବଦାହ କରାଯାଇଥିଲା । ସେଇଠି ମଧ୍ୟ ପ୍ରାଣତ୍ୟାଗ କଲେ ଗାନ୍ଧିଜୀଙ୍କ ସାଥୀ ଓ ସେକ୍ରେଟାରୀ ମହାଦେବ ଦେଶାଇ ।

(୪୩)

## ଆହମେଦାବାଦ ଫୋର୍ଟ

ଆହମେଦାବାଦ ଫୋର୍ଟ କଥା । ଅଟକ ଥିବା ନେତୃବୃନ୍ଦଙ୍କ ଭିତରୁ ଡକ୍ଟର ସୟଦ୍ ମାହମୁଦ୍ ପ୍ରଥମେ ଖଲାସହେଲେ । ହଠାତ୍ ତାଙ୍କୁ କାହିଁକି ଖଲାସ କରିଦିଆଗଲା ତାହା ସେ ଜାଣନ୍ତି ନାହିଁ ବୋଲି ପାଟନାରେ ସାମ୍ବାଦିକଙ୍କୁ କହିଲେ । କିନ୍ତୁ ସେ କ୍ଷମାପ୍ରାର୍ଥନା ମାଗିବା ପତ୍ର ସରକାର ପ୍ରକାଶ କରିଦେଲେ । ଭାରତଛାଡ଼ ପ୍ରସ୍ତାବ କଂଗ୍ରେସ କାର୍ଯ୍ୟକାରୀ

କମିଟି ଓ ନିଖିଳ ଭାରତ କଂଗ୍ରେସ କମିଟିରେ ଆଲୋଚନା ହେଲାବେଳେ ସେ ଉପସ୍ଥିତ ନଥିଲେ ବୋଲି ଲେଖିଥିଲେ । ଏପରି ମିଥ୍ୟା କଥା ସେ କିପରି ଲେଖିଲେ ବୋଲି ଆହମେଦାବାଦ୍ ଫୋର୍ଟରେ ଥିବା ନେତୃବୃନ୍ଦ ଆଶ୍ଚର୍ଯ୍ୟ ହେଲେ । ତା'ପରେ, ସେ ଗାନ୍ଧିଜୀଙ୍କୁ ଭେଟିବା ପରେ ଗୋଟିଏ ବିବୃତି ଦେଲେ । ତା'ର ସାରମର୍ମ ହେଲା ଯେ, ପତ୍ର ଲେଖିସାରିବା ପରେ ବହୁଦିନ ପର୍ଯ୍ୟନ୍ତ ସେ ତାହା ବଡ଼ଲାଟଙ୍କ ନିକଟକୁ ପଠାଇ ନଥିଲେ । ମାନସିକ ଦ୍ୱନ୍ଦ୍ୱର ସମାଧାନ ପାଇଁ ସେ କୋରାନ୍‌କୁ ତିନିଥର ଖୋଲିଲେ– 'ନିଜ ଇଚ୍ଛା ଅନୁଯାୟୀ କାର୍ଯ୍ୟକର' ବୋଲି ଉପଦେଶ ସବୁଥର ବାହାରିଲା । ତାଙ୍କର ଏପରି ପତ୍ର ଲେଖିବା ଉଚିତ ନଥିଲା, କିନ୍ତୁ ସେଥିପାଇଁ ସେ ଅନୁତପ୍ତ ହୋଇଥିବାରୁ ଭାରତବାସୀ ତାଙ୍କୁ କ୍ଷମା କରିବେ ବୋଲି ଆଶା ପୋଷଣ କରି ଗାନ୍ଧିଜୀ ବିବୃତି ଦେଲେ । ମୌଲାନା ଆଜାଦ୍ ତାଙ୍କ ଲିଖିତ 'India Wins Freedom' ପୁସ୍ତକରେ ଏହା ଉଲ୍ଲେଖ କରିଛନ୍ତି ।

## (୪୪)

## ଜର୍ମାନୀରେ ବୋଷ

ସୁଭାଷ ବୋଷ ଜର୍ମାନୀରେ ପହଞ୍ଚିବା ମାତ୍ରେ ସେ ଦେଶର ବୈଦେଶିକ ବିଭାଗର କର୍ମକର୍ତ୍ତାଗଣ ତାଙ୍କୁ ସ୍ୱାଗତ କରିଥିଲେ । ଭାରତର ସ୍ୱାଧୀନତା ପାଇଁ ଜର୍ମାନୀ ଓ ଭାରତର ସଂପର୍କ କ'ଣ ହେବା ଉଚିତ, ସେ ବିଷୟରେ ଜର୍ମାନୀର ବୈଦେଶିକ ବିଭାଗକୁ ସେ ତାଙ୍କର ମତ ଜଣାଇଥିଲେ । ତା ହେଲା–ଇଉରୋପରେ ଅସ୍ଥାୟୀ ସ୍ୱାଧୀନ ଭାରତ ସରକାର ପ୍ରତିଷ୍ଠା, ଭାରତ ସହିତ ଯୋଗାଯୋଗ ରଖିବା ଉଦ୍ଦେଶ୍ୟରେ କାବୁଲରେ କେନ୍ଦ୍ର ପ୍ରତିଷ୍ଠା, ରେଡ଼ିଓ ଦ୍ୱାରା ପ୍ରଚାର ବ୍ୟବସ୍ଥା ଓ ଭାରତୀୟ ଯୁଦ୍ଧବନ୍ଦୀମାନଙ୍କୁ ନେଇ ଏକ ସେନାବାହିନୀ ଗଠନ । ଏ ବାବଦ ଖର୍ଚ୍ଚ ଜର୍ମାନୀ ସରକାର ଭବିଷ୍ୟତର ସ୍ୱାଧୀନ ଭାରତ ସରକାରକୁ ଋଣ ଆକାରରେ ଦେବେ । ଭାରତର ସ୍ୱାଧୀନତା ସପକ୍ଷରେ ଜର୍ମାନୀ ସରକାର ଘୋଷଣାପତ୍ର ପ୍ରକାଶ କରିବେ ।

୧୯୪୧ ମସିହା ନଭେମ୍ବର ମାସ ଦୁଇ ତାରିଖରେ 'ସ୍ୱାଧୀନ-ଭାରତ କେନ୍ଦ୍ର' ଗଠିତ ହୋଇ ଅବିଳମ୍ବେ 'ଆଜାଦ୍ ହିନ୍ଦ ରେଡ଼ିଓ' ପ୍ରତିଷ୍ଠିତ ହେଲା । ଇଂରେଜୀ, ହିନ୍ଦୁସ୍ଥାନୀ, ବଙ୍ଗଳା, ପୁସ୍ତୁ, ତେଲୁଗୁ, ଗୁଜରାଟି, ମରହଟ୍ଟା ଭାଷାରେ ଏହି ରେଡ଼ିଓ ମାଧ୍ୟମରେ ପ୍ରଚାର ହେଉଥିଲା । ୧୯୪୨ ମସିହା ଜାନୁଆରୀ ଛ' ତାରିଖରେ ପ୍ରଥମ ପ୍ରଚାରର ଆରମ୍ଭ କାବୁଲରେ ଅବସ୍ଥିତ ଜର୍ମାନ ଦୂତାବାସ ମାଧ୍ୟମରେ ରହମତ୍ ଖାଁଙ୍କୁ

ବିଭିନ୍ନ ବିଷୟରେ ଦିଆଯାଉଥିବା ଖବର, ସେ ଭାରତକୁ ଆସି ଗୁପ୍ତରେ ଫରୱାର୍ଡ଼ବ୍ଲକ ସଂଗଠନର କର୍ମକର୍ତ୍ତାଙ୍କୁ ଜଣାଉଥିଲେ । 'ସ୍ୱାଧୀନ ଭାରତ କେନ୍ଦ୍ର'ର ପରିଚାଳନା ସକାଶେ ବୋଷ ଇଉରୋପସ୍ଥିତ ବହୁ ଭାରତୀୟଙ୍କ ସାହାଯ୍ୟ ନେଇଥିଲେ । ସେମାନେ ହେଲେ ତାଙ୍କ ପ୍ରାଇଭେଟ ସେକ୍ରେଟାରୀ ରୂପେ କାର୍ଯ୍ୟ କରୁଥିବା ହାଇଦ୍ରାବାଦର ଆବିଦ୍ ହାସାନ୍, ଗୁଜରାଟି ଏମ୍.ଆର୍.ଭ୍ୟାସ,ଇଉରୋପର ଭାରତୀୟ ଛାତ୍ର ସଂଗଠନର ସେକ୍ରେଟାରୀ ମାଦ୍ରାଜର ଏନ୍.ଜି.ସ୍ୱାମୀ, ପୁନାର ଏନ୍.ଜି.ଗନ୍‌ପୁଲେ, ଦିଲ୍ଲୀର ହବିବୁର ରହମନ୍, ସାମ୍ବାଦିକ ଏ.ସି.ଏନ୍. ନାମ୍ବିଆର, ବୋଷଙ୍କ ଡାକ୍ତର ଏ.କ୍ୟୁ.ଫରୋକି, ସାଂବାଦିକ ଜେ.କେ.ବାନାର୍ଜୀ ଓ ଗିରିଜା ମୁଖର୍ଜୀ, ପି.ବି. ଶର୍ମା, ପ୍ରମୋଦ ସେନଗୁପ୍ତ, ଡକ୍ଟର କଲ୍ୟାଣ ବୋଷ, ଏ.ଏମ୍. ସୁଲତାନ । ପରେ 'ଜାତୀୟ କଂଗ୍ରେସ ରେଡ଼ିଓ' ଓ 'ଆଜାଦ ମୁସଲିମ୍ ରେଡ଼ିଓ' ପ୍ରତିଷ୍ଠିତ ହେଲା । ଜର୍ମାନୀରେ ଅବସ୍ଥିତ ଜାପାନ ଦୂତାବାସ ସାହାଯ୍ୟରେ ବୋଷ କଲିକତାସ୍ଥିତ ତାଙ୍କ ବଡ଼ଭାଇ ଶରତଚନ୍ଦ୍ର ବୋଷଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିଥିଲେ । 'ସ୍ୱାଧୀନ ଭାରତ କେନ୍ଦ୍ର' ତରଫରୁ ରେଡ଼ିଓ ପ୍ରଚାର ସହିତ ବହୁ ପୁସ୍ତକ, ପାମ୍ଫଲେଟ୍ ଓ ଆଜାଦ୍ ହିନ୍ଦ ନାମକ ଏକ ମାସିକ ପତ୍ରିକା ଇଂରେଜୀ ଓ ଜର୍ମାନୀ ଭାଷାରେ ପ୍ରକାଶିତ ହେଉଥିଲା । ବୋଷ ଇଟାଲୀକୁ ଯାଇ ଭାରତୀୟ ସ୍ୱାଧୀନତା ସଂପର୍କୀୟ ଘୋଷଣା ବିଷୟରେ ମୁସୋଲିନିଙ୍କ ସହିତ ଆଲୋଚନା କରିଥିଲେ ।

ଯୁଦ୍ଧବନ୍ଦୀମାନଙ୍କୁ ଏକତ୍ରିତ କରି ଭାରତୀୟ ଫୌଜ ଗଠନ ବିଷୟରେ ସେ ଜର୍ମାନୀର ବୈଦେଶିକ ମନ୍ତ୍ରୀଙ୍କ ସହିତ ଆଲୋଚନା କରିଥିଲେ । ଭାରତର ସ୍ୱାଧୀନତା ପାଇଁ ବିଦେଶରେ ଏପରି ଏକ ଫୌଜ ଗଠିତ ହୋଇଛି ବୋଲି ଜଣାପଡ଼ିଲେ ଭାରତୀୟ ସେନାନୀ ଆଉ ଇଂରେଜ ସରକାରର ହୁକୁମ ମାନିବେ ନାହିଁ ବୋଲି ତାଙ୍କର ବିଶ୍ୱାସ ଥିଲା । ଶେଷରେ ଜର୍ମାନୀ ଓ ଇଟାଲୀ ସରକାର ରାଜି ହେଲେ । ଜର୍ମାନୀ ଓ ଇଟାଲୀରେ ଥିବା ଯୁଦ୍ଧବନ୍ଦୀଙ୍କ ସହିତ ସଂପର୍କ ସ୍ଥାପନ ପରେ ରାଜି ହେବା ସେନାନୀଙ୍କୁ ନେଇ ଏହି ଫୌଜ ଗଠିତ ହେଲା । ଇଉରୋପରେ ଥିବା ବହୁ ଭାରତୀୟ ଟ୍ରେନିଂ ନେଇ ଏହି ଫୌଜରେ ଯୋଗଦେଇଥିଲେ । ସର୍ବଶେଷରେ ଏହାର ସଂଖ୍ୟା ଥିଲା ଚାରିହଜାର ।

ସୁଭାଷ ବୋଷଙ୍କ ନେତୃତ୍ୱରେ ଭାରତର ସ୍ୱାଧୀନତା ହାସଲ ନିମନ୍ତେ ଆମେ ଜର୍ମାନୀ ସେନାବାହିନୀର ମୁଖ୍ୟ ହିଟ୍‌ଲରଙ୍କ ଆଦେଶ ମାନିବୁ ବୋଲି ଈଶ୍ୱରଙ୍କ ନାମରେ ଶପଥ ନେଉଛୁ ଏବଂ ଉଦ୍ଦେଶ୍ୟ ହାସଲ ସକାଶେ ଜୀବନବଳି ଦେବାକୁ ପ୍ରସ୍ତୁତ ଅଛୁ ବୋଲି ଏହି ଫୌଜ ଶପଥ ଗ୍ରହଣ କରିଥିଲା । ପ୍ରଧାନ କଥା ହେଲା ଯେ, କେବଳ ଇଂରେଜ ସପକ୍ଷବାଦୀ ଫୌଜଙ୍କ ଛଡ଼ା ଅନ୍ୟ କୌଣସି ଫୌଜ ସହିତ ଭାରତୀୟ ଫୌଜ ଯୁଦ୍ଧ କରିବ ନାହିଁ ବୋଲି ବୋଷ ସର୍ତ୍ତ ଆରୋପ

କରିଥିଲେ । ଶପଥର ସାରାଂଶ ହେଲା—ସୁଭାଷ ବୋଷଙ୍କ ନେତୃତ୍ୱରେ ଭାରତର ସ୍ୱାଧୀନତା ହାସଲ ନିମନ୍ତେ ଯୁଦ୍ଧ, ଜର୍ମାନୀରେ ପ୍ରଥମେ 'ଜୟହିନ୍ଦ୍' ଓ 'ନେତାଜୀ' ସଂବୋଧନର ସୃଷ୍ଟି ହୋଇଥିଲା । ଏହା ଆବିଦ୍ ହାସନଙ୍କ ଚିନ୍ତା-ପ୍ରସୂତ । ମୁସଲମାନଙ୍କର ପରସ୍ପରକୁ ସଂବୋଧନ ଥିଲା 'ସଲାମ ଆଲେକମ୍', ଶିଖଙ୍କ ସଂବୋଧନ 'ସତ୍ ସତ୍ ଅକଲ୍', ରାଜପୁତ୍‌ଙ୍କ ସଂବୋଧନ 'ଜୟ ରାମଜୀ' । ଫୌଜ୍‌ର ମନୋଭାବରେ ଜାତୀୟ ସଂହତି ପ୍ରତିଷ୍ଠା ନିମନ୍ତେ 'ଜୟହିନ୍ଦ୍' ସଂବୋଧନର ସୃଷ୍ଟି । 'ନେତାଜୀ' ସଂବୋଧନକୁ ବୋଷ ଗ୍ରହଣ କରିବାକୁ ପ୍ରଥମେ ଅନିଚ୍ଛୁକ ଥିଲେ, କିନ୍ତୁ ଫୌଜର ଅନୁରୋଧରେ ମାନିନେଲେ ।

ଯୁଦ୍ଧରେ ଜର୍ମାନୀ, ଇଟାଲୀ ଓ ଜାପାନ ସହଯୋଗୀ ଥିଲେ, କିନ୍ତୁ କେହି କାହାକୁ ବିଶ୍ୱାସ କରୁନଥିଲେ । 'ଜର୍ମାନୀ ଏକ ଅପରିଷ୍କାର କୁକୁର' ବୋଲି ମୁସୋଲିନୀ ତାଙ୍କ ବୈଦେଶିକ ମନ୍ତ୍ରୀଙ୍କୁ କହିଲାବେଳେ, 'ଇଟାଲୀ ଅଯୋଗ୍ୟ' ବୋଲି ହିଟଲର୍ ପ୍ରକାଶ କରିଥିଲେ । କେହି କାହାରି ଯୁଦ୍ଧ-ଯୋଜନା ଜାଣୁ ନଥିଲେ । ଏପରି ସ୍ଥଳେ ବୋଷଙ୍କ କାର୍ଯ୍ୟ କଷ୍ଟକର ହେବା ସ୍ୱାଭାବିକ । ୧୯୪୨ ମସିହା ଜାନୁଆରୀ ୨୬ ତାରିଖରେ ଭାରତୀୟ 'ସ୍ୱାଧୀନତା ଦିବସ' ପାଳିତ ହୋଇଥିଲା । ଜର୍ମାନୀର ବହୁ କୂଟନୀତିଜ୍ଞ, ବ୍ୟବସାୟୀ ଓ ବୁଦ୍ଧିଜୀବୀ ଏହି ସମାବେଶରେ ଯୋଗଦେଇଥିଲେ । ସେହିବର୍ଷ ସେପ୍ଟେମ୍ବର ମାସ ୧୧ତାରିଖରେ ହ୍ୟାମବର୍ଗଠାରେ ଅନୁଷ୍ଠିତ ଭାରତୀୟ ସମାବେଶରେ 'ଜନଗଣମନ' ଜାତୀୟ ସଂଗୀତ ଗାନ କରାଯାଇଥିଲା ।

ଜର୍ମାନୀର ବୈଦେଶିକ ବିଭାଗ ବୋଷଙ୍କୁ ସବୁପ୍ରକାର ସାହାଯ୍ୟ କରିବାପାଇଁ ପ୍ରସ୍ତୁତ ଥିଲେ ମଧ୍ୟ ହିଟଲ୍‌ର୍‌ଙ୍କ ଆଦେଶ ବିନା ତାହା ସଂଭବ ନଥିଲା । ୧୯୪୨ ମସିହା ମଇ ମାସ ୨୭ତାରିଖରେ ହିଟ୍‌ଲର-ବୋଷ ସାକ୍ଷାତ ହେଲା । ଭାରତର ସ୍ୱାଧୀନତା ସପକ୍ଷରେ ହିଟଲର୍ ଘୋଷଣା କରନ୍ତୁ ବୋଲି ବୋଷଙ୍କ ପ୍ରସ୍ତାବକୁ ହିଟଲର ଚତୁର ଭାବରେ ଏଡ଼ିଦେଲେ । ଭାରତର ସ୍ୱାଧୀନତା ସଂଗ୍ରାମ କେବେ ସଫଳ ହେବନାହିଁ ଏବଂ ଇଂରେଜଙ୍କ ଛଡ଼ା ଭାରତ ଉପରେ ଅନ୍ୟ କୌଣସି ଶକ୍ତିର ଶାସନ ସେ ଚାହାଁନ୍ତି ନାହିଁ ବୋଲି ହିଟଲର୍ ତାଙ୍କ ଆତ୍ମଜୀବନୀରେ ପ୍ରକାଶ କରିଥିଲେ । ନିଜର ଲକ୍ଷ୍ୟ ହାସଲପାଇଁ ବରଂ ବୋଷ ସୁଦୂର ପ୍ରାଚ୍ୟକୁ ଯାଇ ଜାପାନର ସାହାଯ୍ୟ ଲୋଡ଼ନ୍ତୁ ବୋଲି ସେ ପରାମର୍ଶ ଦେଲେ ।

## (୪୫)

## ଆଜାଦ୍ ହିନ୍ଦ୍ ଫୌଜ ଗଠନ

ଜାପାନ ଥିଲା ବିଭିନ୍ନ ଦେଶର ବହୁ ବିପ୍ଲବୀଙ୍କ ଆଶ୍ରୟସ୍ଥଳୀ । ରୁଷ-ବିପ୍ଲବୀ ସୁନ୍‌ୟାତ୍‌ସେନ୍ ଜାପାନରେ ବହୁବର୍ଷ ସାମରିକ ଶିକ୍ଷା ହାସଲ କରି ଚୀନ୍ ଯାଇ ମାଂଚୁବଂଶର ପତନ ଘଟାଇଥିଲେ । ଭିଏତ୍‌ନାମର ବିପ୍ଲବୀ ଫାନ୍-ବୋ-ଚାଉ ମଧ୍ୟ ବହୁ ଛାତ୍ରଙ୍କ ସହିତ ଜାପାନ ଆସି ତାଙ୍କ ଦେଶରୁ ଫରାସୀ-ସରକାରର ବିତାଡ଼ନ ପାଇଁ ରଣକୌଶଳ ଶିକ୍ଷାକରିଥିଲେ । ବର୍ମାର ବିପ୍ଲବୀ ଅଂଗସାନଙ୍କୁ ମଧ୍ୟ ଜାପାନ ସାହାଯ୍ୟ କରୁଥିଲା । ପ୍ରଥମ ମହାଯୁଦ୍ଧ ପରେ ଭାରତୀୟ ବିପ୍ଲବୀ ରାସବିହାରୀ ବୋଷ ଜାପାନ ଯାଇ ସେଠାରେ ବସବାସ କରୁଥିଲେ ।

ସେତେବେଳେ ଦକ୍ଷିଣପୂର୍ବ ଏସିଆରେ ୩୦ଲକ୍ଷ ଭାରତୀୟ ବସବାସ କରୁଥିଲେ । ଏମାନଙ୍କ ସହିତ ନେତୃବୃନ୍ଦଙ୍କ ସଂପର୍କ ସ୍ଥାପନ ପାଇଁ ଜାପାନ ସରକାର 'ଫୁଜିଆରା' ନାମକ ଜନୈକ ସାମରିକ ଅଫିସରଙ୍କୁ ଦାୟିତ୍ୱ ଦେଲେ । ବ୍ୟାଙ୍କକ୍‌ରେ ଦୁଇଟି ଭାରତୀୟ ସଂଗଠନ ଥିଲା– 'ଭାରତୀୟ ସ୍ୱାଧୀନତା ଲିଗ୍' ଓ 'ଥାଇ-ଭାରତ ସାଂସ୍କୃତିକ ସଂଘ' । ଫୁଜିଆରା ପ୍ରଥମେ ଭାରତୀୟ ସ୍ୱାଧୀନତା ଲିଗ୍‌ର ସଭ୍ୟ ପ୍ରିତମ୍ ସିଂହ ଓ ଅମର ସିଂହଙ୍କ ସହିତ ସଂପର୍କ ସ୍ଥାପନ କଲେ । ରାଜନୀତିକ କାର୍ଯ୍ୟକଳାପ ଯୋଗୁ ଅମର ସିଂହ ପୂର୍ବରୁ ବହୁବର୍ଷ ଭାରତରେ ଜେଲଦଣ୍ଡ ଭୋଗିଥିଲେ । ସେମାନଙ୍କ ସାହାଯ୍ୟରେ ଫୁଜିଆରା ମାଳୟ ଓ ସିଂଗାପୁରରେ ଅବସ୍ଥିତ ଭାରତୀୟ ଫୌଜର କ୍ୟାପ୍‌ଟେନ ମୋହନ ସିଂହଙ୍କ ସହିତ ସଂପର୍କ ସ୍ଥାପନ କଲେ । 'ଆଜାଦ୍ ହିନ୍ଦ ଫୌଜ'ଗଠନ ପାଇଁ ମୋହନ ସିଂହ ଲାଗିପଡ଼ିଲେ ।

୧୯୪୨ ମସିହା ଫେବୃଆରୀ ୧୭ ତାରିଖରେ ୪୫,୦୦୦ ଯୁଦ୍ଧବନ୍ଦୀଙ୍କୁ ଏକତ୍ର କରି ଫୁଜିଆରା, ମୋହନ ସିଂହ ଓ ପ୍ରିତମ ସିଂହ ଭାରତର ସ୍ୱାଧୀନତା ପାଇଁ ଲଢ଼େଇ ସକାଶେ 'ଆଜାଦ୍ ହିନ୍ଦ ଫୌଜ'ରେ ଯୋଗଦେବାକୁ ଆହ୍ୱାନ କଲେ । ସଂଗେ ସଂଗେ ବହୁ ଯୁଦ୍ଧବନ୍ଦୀ ଏ ପ୍ରସ୍ତାବରେ ରାଜି ହେଲେ । 'ଇନ୍‌କିଲାବ ଜିନ୍ଦାବାଦ' ଧ୍ୱନିରେ ସଭାସ୍ଥଳ କମ୍ପିଉଠିଲା । 'ଭାରତୀୟ ସ୍ୱାଧୀନତା ଲିଗ୍'ର ବୈଠକରେ ସୁଭାଷ ବୋଷଙ୍କୁ ସୁଦୂର ପ୍ରାଚ୍ୟକୁ ଆସି ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେବାକୁ ନିମନ୍ତ୍ରଣ କରାଗଲା ।

ମୋହନ ସିଂହଙ୍କ ନେତୃତ୍ୱରେ ୧୯୪୨ ମସିହା ସେପ୍ଟେମ୍ବର ପହିଲା ଦିନ ୧୬,୩୦୦ ଯୁଦ୍ଧବନ୍ଦୀଙ୍କୁ ନେଇ ଆଜାଦ୍ ହିନ୍ଦ୍ ଫୌଜ ଗଠିତ ହେଲା । 'ଭାରତୀୟ

ସ୍ୱାଧୀନତା ଲିଗ୍'ର ନିମନ୍ତ୍ରଣକୁ ଗ୍ରହଣକରି ବୋଷ ଦକ୍ଷିଣ-ପୂର୍ବ ଏସିଆକୁ ଆସିବାକୁ ସ୍ଥିର କଲେ। ୧୯୪୩ ମସିହା ଫେବୃଆରୀ ମାସ ୮ତାରିଖରେ ହାସାନ୍‌ଙ୍କ ସହିତ ଏକ ଜର୍ମାନୀ ବୁଡ଼ାଜାହାଜରେ ବୋଷଙ୍କ ଯାତ୍ରା ଆରମ୍ଭ ହେଲା। ଆଟ୍‌ଲାଣ୍ଟିକ୍ ମହାସାଗର ପାରିହୋଇ ଏପ୍ରିଲ ୨୪ତାରିଖରେ ଭାରତୀୟ ମହାସାଗରରେ ପହଁଚି ଏକ ଜାପାନୀ ବୁଡ଼ାଜାହାଜ ଯୋଗେ ଯାତ୍ରା କଲେ। ସାବାନ୍ ଦ୍ୱୀପପୁଂଜରେ ପହଁଚିଲା ପରେ ଜାପାନର ସାମରିକ ଅଫିସରଙ୍କ ସହିତ ଉଡ଼ାଜାହାଜରେ ମଇ ମାସରେ ଜାପାନରେ ପହଁଚିଲେ।

ବୋଷ ଜର୍ମାନୀରେ ପହଁଚିଲା ବେଳକୁ ଜାପାନ ବା ଆମେରିକା ଯୁଦ୍ଧରେ ଭାଗୀଦାର ନଥିଲେ। ଜର୍ମାନୀ ରୁଷ ଉପରେ ଆକ୍ରମଣ କରିନଥିଲା। ୧୯୪୩ ମସିହା ଏପ୍ରିଲ ମାସବେଳକୁ ଷ୍ଟାଲିନ୍‌ଗ୍ରାଡ୍‌ରେ ଜର୍ମାନୀର ପରାଜୟ ଓ ଦକ୍ଷିଣ-ପୂର୍ବ ଏସିଆରେ ଜାପାନ ଉପରେ ଆମେରିକାର ଆକ୍ରମଣ ଯୋଗୁ ଯୁଦ୍ଧ-ପରିସ୍ଥିତି ବଦଳି-ଯାଇଥିଲା। ଜାପାନର ଅଗ୍ରଗତିବେଳେ ବୋଷ ଦକ୍ଷିଣ-ପୂର୍ବ ଏସିଆକୁ ଆସିଥିଲେ ହୁଏତ ଇତିହାସ ଭିନ୍ନ ମୋଡ଼ ନେଇଥାନ୍ତା।

(୪୬)

## ଦକ୍ଷିଣପୂର୍ବ ଏସିଆରେ ନେତାଜୀ

୧୯୪୩ ମସିହା ଜୁନ୍ ୧୦ତାରିଖରେ ଜାପାନର ପ୍ରଧାନମନ୍ତ୍ରୀ ଟୋଜୋଙ୍କ ସହିତ ବୋଷଙ୍କର ଟୋକିଓରେ ସାକ୍ଷାତ ହେଲା। ଭାରତର ସ୍ୱାଧୀନତା ହାସଲ ପାଇଁ ଜାପାନ ସବୁପ୍ରକାର ସାହାଯ୍ୟ ଦେବ ବୋଲି ଜାପାନ ପାର୍ଲିଆମେଣ୍ଟରେ ଜୁନ୍ ୧୬ତାରିଖରେ ଟୋଜୋ ଘୋଷଣା କଲେ। ଟୋକିଓରୁ ସେ ସିଂଗାପୁରରେ ପହଁଚିଲାବେଳେ ଆଜାଦ୍ ହିଂଦ୍ ଫୌଜର ସେନାଧକ୍ଷଗଣ ତାଙ୍କୁ ସାକ୍ଷାତ କରିଥିଲେ। କର୍ଣ୍ଣେଲ ପ୍ରେମ ସାଇଗଲ୍ ତାଙ୍କର ସାମରିକ ସେକ୍ରେଟାରୀ ହେଲେ। ଏକ ବିରାଟ ସଭାରେ ଉଦ୍‌ବୋଧନ ଦେଇ ରାସବିହାରୀ ବୋଷ ଭାରତୀୟ ସ୍ୱାଧୀନତା ଲିଗ୍‌ର ସଭାପତି ପଦରୁ ଇସ୍ତଫା ଦେଲେ ଏବଂ ବୋଷ ନୂତନ ସଭାପତି ହେଲେ। ସେହି ସଭାରେ ସୁଭାଷ ବୋଷ କହିଲେ ଯେ, ଭାରତ ଭିତରେ ଓ ବାହାରେ ଥିବା ଭାରତୀୟଙ୍କୁ ସଶସ୍ତ୍ର ବିଦ୍ରୋହ ପାଇଁ ପ୍ରସ୍ତୁତ କରିବା ଲକ୍ଷ୍ୟରେ ସେ ଏକ ଅସ୍ଥାୟୀ ସ୍ୱାଧୀନ ଭାରତ ସରକାର ଗଠନର ଚିନ୍ତା କରୁଛନ୍ତି। ସ୍ୱାଧୀନତା ହାସଲ ନିମନ୍ତେ ଫୌଜକୁ କ୍ଷୁଧା, ତୃଷା, ଦୁଃଖ, କଷ୍ଟ ଓ ମୃତ୍ୟୁବରଣ ନିମନ୍ତେ ପ୍ରସ୍ତୁତ ହେବାକୁ ପଡ଼ିବ। 'ଦିଲ୍ଲୀ ଚଲୋ'

ଆମର ଧ୍ୱନି ହେଉ । ସେ ଏକ ନାରୀ ସେନାବାହିନୀ ଗଠନ କରି ଏହାକୁ 'ଝାନ୍ସି ରାଣୀ ବାହିନୀ' ନାମ ଦେଇଥିଲେ । ଏହାର ଗଠନ ପାଇଁ ସେ ସିଂଗାପୁରର ଡାକ୍ତର ଲକ୍ଷ୍ମୀ ସ୍ୱାମୀନାଥନଙ୍କୁ ଦାୟିତ୍ୱ ଦେଇଥିଲେ । ଏହି ଫୌଜରେ ୧୦୦୦ନାରୀ ଯୋଗ ଦେଇଥିଲେ । ବୋଷଙ୍କ ଅସ୍ଥାୟୀ ସ୍ୱାଧୀନ ଭାରତ ସରକାରରେ ଲକ୍ଷ୍ମୀ ମହିଳା-ବିଭାଗର ମନ୍ତ୍ରୀ ହୋଇଥିଲେ । କ୍ରମେ ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟ ସଂଖ୍ୟା ପ୍ରାୟ ୪୦ହଜାର ହୋଇଥିଲା ।

ଆଜାଦ୍ ହିଂଦ୍ ଫୌଜ ଜାପାନ ସେନାବାହିନୀର ଅନୁଗତ ରୂପେ ନୁହେଁ, ଏକ ସ୍ୱାଧୀନ ବାହିନୀ ରୂପେ କାର୍ଯ୍ୟ କରିବ ଏବଂ ଏହା ଭାରତ ଭୂଇଁରେ ପ୍ରଥମେ ପ୍ରବେଶ କରିବ । ଆଜାଦ୍ ହିନ୍ଦର ପ୍ରବେଶ । ଦେଶସାରା ଜନତାର ବିଦ୍ରୋହ ସୃଷ୍ଟିକରିବ । ଏହା ଥିଲା ନେତାଜୀଙ୍କ କଳ୍ପନା ।

୧୯୪୩ ମସିହା ଅକ୍ଟୋବର ୨୧ ତାରିଖରେ ସିଂଗାପୁରଠାରେ ସହସ୍ର ସହସ୍ର ପ୍ରବାସୀ ଭାରତୀୟଙ୍କ ଉପସ୍ଥିତିରେ ଅସ୍ଥାୟୀ ଆଜାଦ୍ ହିଂଦ୍ ସରକାର ଗଠନ ଘୋଷିତ ହେଲା । ସେତେବେଳକୁ ଯୁଦ୍ଧର ପରିସ୍ଥିତି ବଦଳିଗଲାଣି, ଇଟାଲୀରେ ମୁସୋଲିନୀ କ୍ଷମତାଚ୍ୟୁତ ହୋଇସାରିଲେଣି, ଜର୍ମାନୀ ଇଟାଲୀ ଆକ୍ରମଣ କରିସାରିଲାଣି ଓ ରୁଷରୁ ପଛଘୁଂଚା ଦେଲାଣି, ଜର୍ମାନୀ ଉପରେ ଇଂରେଜ ଓ ଆମେରିକାର ଘନଘନ ବୋମାବୃଷ୍ଟି ଚାଲିଲାଣି, ଜାପାନର ପଛଘୁଂଚା ମଧ୍ୟ ଆରଂଭ ହୋଇସାରିଲାଣି । ତଥାପି ନେତାଜୀ ଅଟଳ ।

## (୪୭)

## ଅସ୍ଥାୟୀ ଆଜାଦ୍‌ହିଂଦ୍ ସରକାର ଗଠନ ଘୋଷଣା

୧୭୫୭ ମସିହାରେ ବ୍ରିଟିଶ ଶକ୍ତିଠାରୁ ପ୍ରଥମଥର ପାଇଁ ପରାଜିତ ହେଲାପରେ ଏକଶତବର୍ଷ ଧରି ଭାରତୀୟଗଣ ନିରବଚ୍ଛିନ୍ନଭାବେ କଠୋର ସଂଗ୍ରାମ ଚଳାଇଛନ୍ତି । ଅତୁଳନୀୟ ସାହସ ଓ ଆତ୍ମବଳି ଏହି ଏକଶତବର୍ଷର ଇତିହାସ । ବଙ୍ଗର ସିରାଜଉଦ୍ଦୁଲା ଓ ମୋହନ ରାୟ, ଦକ୍ଷିଣ ଭାରତର ହାଇଦର ଆଲ୍ଲି, ଟିପୁ ସୁଲତାନ୍ ଓ ଭେଲୁ ଟାଂପି, ମହାରାଷ୍ଟ୍ରର ଆପାସାହେବ ଭୋନ୍‌ସଲେ ଓ ପେଶୱା ବାଜିରାଓ, ଆଉଧର ବେଗମ, ପଂଜାବର ସର୍ଦାର ଶ୍ୟାମସିଂହ, ଆଟାରିୱାଲା ଓ ଝାନ୍‌ସିର ରାଣୀ ଲକ୍ଷ୍ମୀବାଈ, ତାଂତିଆ ଟୋପେ, ଡୁମରାନ୍‌ର ମହାରାଜା କନୱାର ସିଂହ, ନାନାସାହେବ ପ୍ରଭୃତି ଯୋଦ୍ଧାଙ୍କ ନାମ ଚିରଦିନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ବ୍ରିଟିଶ

ରାଜତ୍ୱ ସମଗ୍ର ଭାରତପାଇଁ ପ୍ରଧାନ ବିପଦ– ଏକଥା ଆମର ପୂର୍ବପୁରୁଷମାନେ ଉପଲବ୍ଧି ନ କରିଥିବାରୁ ଏକତ୍ର ହୋଇ ସଂଗ୍ରାମ କରିପାରିଲେ ନାହିଁ । ୧୮୫୭ ମସିହାରେ ଏହି ସତ୍ୟ ଉପଲବ୍ଧି କରି ଦିଲ୍ଲୀର ସମ୍ରାଟ ବାହାଦୂର ସାହାଙ୍କ ପତାକାତଳେ ଏକଜୁଟ ହୋଇ ସେମାନେ ସଂଗ୍ରାମ କରିଥିଲେ । ପ୍ରଥମାବସ୍ଥାରେ ବିଜୟ ହାସଲ କରିବାପରେ ଭୁଲ ନେତୃତ୍ୱ ଓ ଦୁର୍ଭାଗ୍ୟଯୋଗୁ ଶେଷରେ ସେମାନେ ପରାଜିତ ହେଲେ । କିନ୍ତୁ ମାନସପଟରେ ଏହି ଉଜ୍ଜ୍ୱଳ ତାରକାମାନେ ଆମକୁ ସଂଗ୍ରାମ ଓ ତ୍ୟାଗ କରିବାକୁ ପ୍ରେରଣା ଦେଉଛନ୍ତି ।

ବ୍ରିଟିଶ ସରକାର ଭାରତୀୟଙ୍କୁ ନିରସ୍ତ୍ରୀକରଣ କରି ଦମନମୂଳକ ଶାସନ ଚଳାଇଥିବାରୁ ସେମାନେ କିଛିକାଳ ତାହା ସହ୍ୟ କରିଗଲେ । ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠା ହେବାରୁ ନବଜାଗରଣ ସୃଷ୍ଟି ହେଲା । ସେହିଦିନଠାରୁ ପ୍ରଥମ ମହାଯୁଦ୍ଧ ଶେଷ ପର୍ଯ୍ୟନ୍ତ ସ୍ୱାଧୀନତା ହାସଲପାଇଁ ଭାରତୀୟଗଣ ଆନ୍ଦୋଳନ, ପ୍ରଚାର, ବ୍ରିଟିଶଦ୍ରବ୍ୟ ବର୍ଜନ, ସଶସ୍ତ୍ର ଆନ୍ଦୋଳନ ପ୍ରଭୃତି ନାନା ଉପାୟ ଅବଲମ୍ବନ କରିଥିଲେ ସୁଦ୍ଧା ତାହା ଫଳପ୍ରଦ ହୋଇନାହିଁ । ଅନ୍ୟ ଉପାୟ ଖୋଜା ହେଉଥିବାବେଳେ ମହାତ୍ମାଗାନ୍ଧୀ ଆସିଲେ ତାଙ୍କ ଅସ୍ତ୍ର ଅସହଯୋଗ ଓ ସତ୍ୟାଗ୍ରହ ଧରି ।

ଦୁଇଦଶନ୍ଧି କାଳ ସ୍ୱାଧୀନତାର ସଂଦେଶ ଘରେ ଘରେ ପହଞ୍ଚିଲା ଏବଂ ସ୍ୱାଧୀନତା ହାସଲ ନିମନ୍ତେ ଦୁଃଖ, କଷ୍ଟ, ତ୍ୟାଗ ଓ ମରଣବରଣ କରିବାକୁ ଲୋକେ ଶିକ୍ଷା ପାଇଲେ । ଭାରତୀୟଗଣ ଗୋଟିଏ ଅନୁଷ୍ଠାନରେ ବାନ୍ଧି ହୋଇ ରହିଲେ । ଗୋଟିଏ ସ୍ୱରରେ ଦାବି ଉତ୍ତୋଳନ ଏବଂ ଏକମନରେ ସେମାନେ ସ୍ୱାଧୀନତା ହାସଲପାଇଁ କାର୍ଯ୍ୟ କଲେ । ଦେଶକୁ ଶାସନ କରିବାର ଯୋଗ୍ୟତା କଂଗ୍ରେସର ଅଛି ବୋଲି ୧୯୩୭-୧୯୩୯ରେ ସବୁ କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରମାଣିତ କଲେ ।

ଦ୍ୱିତୀୟ ମହାଯୁଦ୍ଧବେଳକୁ ଶେଷ ସ୍ୱାଧୀନତା ସଂଗ୍ରାମ ନିମେନ୍ତ କ୍ଷେତ୍ର ପ୍ରସ୍ତୁତ ହୋଇଯାଇଛି । ଜର୍ମାନୀ ତାର ମିତ୍ରଙ୍କ ସାହାଯ୍ୟରେ ଇଉରୋପରେ ଆମର ଶତ୍ରୁକୁ ପରାଜିତ କରିଛି ଓ ପୂର୍ବ ଏସିଆରେ ମଧ୍ୟ ଜାପାନ ଆମ ଶତ୍ରୁକୁ ପ୍ରତିହତ କରିଛି ।

ସ୍ୱାଧୀନତା ହାସଲ ନିମନ୍ତେ ଏକ ସୁନ୍ଦର ପରିସ୍ଥିତି ସୃଷ୍ଟି ହୋଇଛି ।

ଆଧୁନିକ ଇତିହାସରେ ପ୍ରଥମଥରପାଇଁ ବିଦେଶରେ ଅବସ୍ଥାନ କରୁଥିବା ଭାରତୀୟମାନଙ୍କ ଚେତନା ଜାଗ୍ରତ ହୋଇଛି ଏବଂ ସେମାନେ ଗୋଟିଏ ଅନୁଷ୍ଠାନରେ ଏକତ୍ର ହୋଇଛନ୍ତି । ଭାରତବାସୀଙ୍କ ଭାବନା ଓ ଚିନ୍ତାଧାରା ସହିତ ସେମାନେ ନିଜକୁ ସାମିଲ କରିଛନ୍ତି ଏବଂ ସ୍ୱାଧୀନତା ହାସଲ ନିମନ୍ତେ ଏକତ୍ର କାର୍ଯ୍ୟ କରିବା ନିମନ୍ତେ ପ୍ରସ୍ତୁତ ହୋଇଛନ୍ତି । ପୂର୍ବ ଏସିଆର ୨୦ ଲକ୍ଷ ଭାରୀତୟ ଏକ ପତାକାତଳେ ଏକତ୍ର

ହୋଇଛନ୍ତି ଏବଂ ସେମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ଆଜାଦ୍‌ହିନ୍ଦ୍ ଫୌଜ– 'ଦିଲ୍ଲୀ ଚଲୋ' ସ୍ଲୋଗାନ ଦେଇ ।

ବ୍ରିଟିଶ ଶାସନ ଭାରତୀୟଙ୍କୁ ଲୁଟକରି, ଦାରିଦ୍ର୍ୟ ଓ ଅନାହାରରେ ହତ୍ୟାକରି, ସେମାନଙ୍କର ସଦିଚ୍ଛା ହରାଇ ଏକ ବିପଜ୍ଜନକ ଅବସ୍ଥାରେ ପହଁଚିଛି । ସେହି ଶାସନର ଅବସାନ ନିମନ୍ତେ ଗୋଟିଏ ଅଗ୍ନିଶିଖା ଆବଶ୍ୟକ । ଆଜାଦ୍‌ହିନ୍ଦ ଫୌଜ ସେହି ଅଗ୍ନିଶିଖା ପ୍ରଜ୍ୱଳିତ କରିବ । ଭାରତୀୟ ଓ ବ୍ରିଟିଶ ସାମରିକ ବାହିନୀର ଭାରତୀୟ ଫୌଜର ସମର୍ଥନରେ ଓ ନିଜର ଶକ୍ତିବଳରେ ଆଜାଦ ହିଂଦ ଫୌଜ ଏହି ଐତିହାସିକ ବିଜୟ ହାସଲ କରିବାରେ ସଂଦେହନାହିଁ ।

ଏକ ଅସ୍ଥାୟୀ ସରକାର ଗଠନ କରି ତା'ର ପତାକାତଳେ ଏକଜୁଟ ହୋଇ ଶେଷ ସଂଗ୍ରାମ ଚଳାଇବାର ସମୟ ଆସିଯାଇଛି । କିନ୍ତୁ ଭାରତବାସୀଗଣ ନିରସ୍ତ୍ର ହୋଇଥିବା ଯୋଗୁ ଓ କଂଗ୍ରେସ ନେତୃବୃନ୍ଦ କାରାବଦ୍ଧ ଥିବା ଯୋଗୁ ବର୍ତ୍ତମାନ ଭାରତରେ ଏପରି ଏକ ସରକାର ଗଠନ ସଂଭବ ନୁହେଁ । ସେଥିପାଇଁ ପୂର୍ବ ଏସିଆର ଭାରତୀୟ ସ୍ୱାଧୀନତା ଲିଗ୍ ଏପରି ଏକ ସରକାର ଗଠନ କରି ଆଜାଦ୍‌ହିନ୍ଦ୍ ଫୌଜର ସାହାଯ୍ୟରେ ଶେଷ ସ୍ୱାଧୀନତା ସଂଗ୍ରାମରେ ଲମ୍ଫ ଦିଅନ୍ତୁ । ଏ ଶେଷ ସ୍ୱାଧୀନତା ସଂଗ୍ରାମରେ ଆମର କାର୍ଯ୍ୟାବଳୀକୁ ଈଶ୍ୱର ଆଁଶୀର୍ବାଦ ଦିଅନ୍ତୁ ।

ଭାରତରୁ ଇଂରେଜ ଶାସନର ଅବସାନ ଏହି ସରକାରର ପ୍ରଥମ କାର୍ଯ୍ୟ ହେବ । ତା'ପରେ ଭାରତୀୟଙ୍କ ବିଶ୍ୱାସଭାଜନ ହେଲାପରି ଏକ ସ୍ଥାୟୀ ଜାତୀୟ ସରକାର ଗଠନ ଦ୍ୱିତୀୟ କାର୍ଯ୍ୟ ହେବ । ଏହି ସ୍ଥାୟୀ ସରକାର ଗଠିତ ହେବା ପର୍ଯ୍ୟନ୍ତ ଭାରତୀୟଙ୍କ ସ୍ୱାର୍ଥରକ୍ଷା ଲାଗି ଏହି ଅସ୍ଥାୟୀ ସରକାର ଶାସନ ପରିଚାଳନା କରିବ । ପ୍ରତ୍ୟେକ ନାଗରିକ ସମାନ ସୁବିଧା ଉପଭୋଗ କରିବେ ଓ ଧର୍ମସ୍ୱାଧୀନତା ଅକ୍ଷୁଣ୍ଣ ରହିବ ବୋଲି ଏହି ସରକାର ଘୋଷଣା କରୁଛି ।

ଈଶ୍ୱରଙ୍କ ନାମରେ, ଭାରତୀୟଙ୍କୁ ଏକ ଜାତିରେ ପରିଣତ କରିଥିବା ପୂର୍ବପୁରୁଷମାନଙ୍କ ନାମରେ, ବୀରତ୍ୱ ଓ ଆତ୍ମତ୍ୟାଗର ପରଂପରା ରଖିଯାଇଥିବା ସହିଦମାନଙ୍କ ନାମରେ– ଏକ ପତାକାତଳେ ଏକଜୁଟ ହୋଇ ସ୍ୱାଧୀନତା-ସଂଗ୍ରାମ ପରିଚାଳନା କରିବାକୁ ଏହି ସରକାର ଭାରତୀୟମାନଙ୍କୁ ଆହ୍ୱାନ କରୁଛି ।

ଅସ୍ଥାୟୀ ସରକାର ପକ୍ଷରୁ ଘୋଷଣାପତ୍ରରେ ଆବେଦନ କରିଥିବା କର୍ମଚାରୀଙ୍କ ନିବେଦନ –

ସୁଭାଷଚନ୍ଦ୍ର ବୋଷ (ରାଷ୍ଟ୍ରମୁଖ୍ୟ, ପ୍ରଧାନମନ୍ତ୍ରୀ, ଯୁଦ୍ଧ ଓ ବୈଦେଶିକ ମନ୍ତ୍ରୀ)
କ୍ୟାପ୍‌ଟେନ୍ ଶ୍ରୀମତୀ ଲକ୍ଷ୍ମୀ (ନାରୀ ସଂଗଠନ)
ଏସ୍.ଏ. ଆୟାର (ପ୍ରଚାର ମନ୍ତ୍ରୀ)
ଲେଫ୍ଟନାଣ୍ଟ କର୍ଣ୍ଣେଲ ଏ.ସି. ଚାଟାର୍ଜୀ (ଅର୍ଥମନ୍ତ୍ରୀ)

ଅଜାଦ୍‌ହିନ୍ଦ୍ ଫୌଜର ପ୍ରତିନିଧିଗଣ –

ଲେଫ୍ଟନାଣ୍ଟ କର୍ଣ୍ଣେଲ ଅଜିଜ ଆହମେଦ

,, ଏନ୍.ଏସ୍. ଭଗତ୍

,, ଜେ.କେ. ଭୋନ୍‌ସଲେ

,, ଏମ୍.ଜେ. କିଆନୀ

,, ଏ.ଡି. ଲୋଗ୍‌ନାଥନ

,, ଏସାନ୍ କାଦିର

,, ସାହାନଓ୍ୟାଜ

ଏ.କେ. ସାହାୟେ (ସେକ୍ରେଟାରୀ)

ରାସବିହାରୀ ବୋଷ (ପ୍ରଧାନ ପରାମର୍ଶଦାତା)

ପରାମର୍ଶଦାତା –

କରିମ୍ ଘାନୋ

ଦେବନାଥ ଦାସ୍

ସି.ଏମ୍. ଖାଁ

ଏ. ୟେଲେପା

ଜେ. ଥିଭି

ସର୍ଦାର ଇସାର ସିଂହ

ଏ.ଏନ୍. ସରକାର (ଆଇନ ପରାମର୍ଶଦାତା)

ସିଓନାନ୍ ୨୧ ଅକ୍ଟୋବର, ୧୯୪୩ ।

ଏହି ଘୋଷଣାପତ୍ରରେ ସ୍ୱାକ୍ଷର କରିଥିଲେ ଆଜାଦ୍ ହିନ୍ଦ୍ ସରକାରର ଶାସନମୁଖ୍ୟ, ପ୍ରଧାନମନ୍ତ୍ରୀ, ଯୁଦ୍ଧ ଓ ବୈଦେଶିକ ବ୍ୟାପାର ମନ୍ତ୍ରୀ ସୁଭାଷଚନ୍ଦ୍ର ବୋଷ । ମହିଳା ଫୌଜର ମନ୍ତ୍ରୀ କ୍ୟାପ୍‌ଟେନ୍ ଶ୍ରୀମତୀ ଲକ୍ଷ୍ମୀ, ପ୍ରଚାର ବିଭାଗ ମନ୍ତ୍ରୀ ଏସ୍.ଏ. ଆୟାର, ଅର୍ଥମନ୍ତ୍ରୀ ଏ.ସି. ଚାଟାର୍ଜୀ, ଆଜାଦ୍ ହିନ୍ଦ୍ ଫୌଜର ପ୍ରତିନିଧିଗଣ– ଲେଫ୍ଟନାଣ୍ଟ କର୍ଣ୍ଣେଲ ଅଜିଦ୍ ଆହମଦ୍, ଏନ୍.ଏସ୍. ଭଗତ, ଜେ.କେ. ଭୋନ୍‌ସ୍ଲେ, ଗୁଲଜାର ସିଂହ, ଏ.ଡି. ଲୋଗନାଥନ, ଏମ୍.ଜେ. କିଆନି, ଏସାନ୍ କାଦିର, ସାହାନୱାଜ, ସେକ୍ରେଟାରୀ ଏମ୍. ସହାୟ, ସରକାରର ପ୍ରଧାନ ପରାମର୍ଶଦାତା ରାସବିହାରୀ ବୋଷ, ପରାମର୍ଶଦାତା କରିମ୍ ଘାନୋ, ଦେବନାଥ ଦାସ, ସି.ଏମ୍. ଖାଁ, ଏ, ୟେଲେପା, ଜେ. ଥିଭି, ସର୍ଦ୍ଦାର ଇସାର ସିଂହ ଓ ଆଇନ ପରାମର୍ଶଦାତା ଏ.ଏନ୍. ସରକାର ।

୧୯୪୩ ମସିହା ଅଗଷ୍ଟ ମାସ ୨୫ ତାରିଖରେ ଆଜାଦ୍ ହିନ୍ଦ୍ ଫୌଜର ମୁଖ୍ୟ କମାଣ୍ଡର ଦାୟିତ୍ୱ ଗ୍ରହଣକରି ବୋଷ ଯେଉଁ ଆଦେଶ ଦେଇଥିଲେ, ତା'ର ସାରାଂଶ

ହେଲା– ଦେଶର ୩୮କୋଟି ଜନତାର ସେବକ ରୂପେ ମୁଁ ନିଜକୁ ଜ୍ଞାନକରେ । ଭାରତର ସ୍ୱାଧୀନତା ହାସଲ ଆଜାଦ୍ ହିନ୍ଦ୍ ଫୌଜର ପ୍ରଧାନ ଲକ୍ଷ୍ୟ । ଏହା କଷ୍ଟକର ହୋଇପାରେ, ମାତ୍ର ପୃଥିବୀର କୌଣସି ଶକ୍ତି ଆମର ଜନ୍ମଗତ ଅଧିକାରରୁ ଆମକୁ ବଞ୍ଚିତ କରିନପାରେ । ଆମର ବିଜୟ ସୁନିଶ୍ଚିତ । ସେ ବିଜୟଯାତ୍ରା ଆରମ୍ଭ ହେଉ । ଦିଲ୍ଲୀର ବଡ଼ଲାଟ ଭବନ ଉପରେ ଆମ ଜାତୀୟ ପତାକା ଉତ୍ତୋଳିତ ନହେବା ପର୍ଯ୍ୟନ୍ତ ଏବଂ ଲାଲକିଲ୍ଲାରେ ଆଜାଦ୍ ହିନ୍ଦ୍ ଫୌଜର ବିଜୟଯାତ୍ରା ନହେବା ପର୍ଯ୍ୟନ୍ତ ଏ ଯାତ୍ରାର ଅବସାନ ନାହିଁ ।

ଆଜାଦ୍ ହିନ୍ଦ୍ ସରକାର ଜାପାନ, ଜର୍ମାନୀ, ଇଟାଲୀ, କୋରିଆ, ମାଞ୍ଚୁକୋ, ନାନକିଂଗ, ଫିଲିପାଇନ୍ସ,ଥାଇଲାଣ୍ଡ ଓ ବର୍ମା ଦେଶର ସ୍ୱୀକୃତି ଲାଭ କରିଥିଲା । ଅବିଳମ୍ବେ ଆଜାଦ୍ ହିନ୍ଦ୍ ସରକାର ଆମେରିକା ଓ ବ୍ରିଟେନ୍ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା ।

ସେତେବେଳକୁ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଜାପାନର ହସ୍ତଗତ ହୋଇସାରିଥିଲା । ଏହାକୁ ଆଜାଦ୍ ହିନ୍ଦ୍ ସରକାରକୁ ହସ୍ତାନ୍ତର କରାଯାଉ ବୋଲି ପ୍ରସ୍ତାବରେ ଜାପାନର ସାମରିକ କର୍ତ୍ତୃପକ୍ଷ ରାଜି ହେଲେ ନାହିଁ– କାରଣ ଏହା ଜାପାନ-ବାହିନୀର ଏକ ପ୍ରଧାନ ଘାଟି ଥିଲା । କିନ୍ତୁ ଏହାର ବେସାମରିକ ଶାସନ ଦାୟିତ୍ୱ ହସ୍ତାନ୍ତର କରିବାକୁ ଜାପାନ ରାଜିହେଲା । ୧୯୪୩ ମସିହା ଡିସେମ୍ବର ମାସରେ ବୋଷ ପୋର୍ଟବ୍ଲେଆରକୁ ଆସି ହସ୍ତାନ୍ତର ଉତ୍ସବରେ ଯୋଗଦେଇଥିଲେ ଓ ସେହି ଦ୍ୱୀପପୁଞ୍ଜର 'ସହିଦ୍' ଓ 'ସ୍ୱରାଜ୍ୟ' ନାମକରଣ କରି ଲେଫ୍ଟନାଂଟ-କର୍ଣ୍ଣେଲ ଲୋଗନାଥଙ୍କୁ ଦ୍ୱୀପପୁଂଜର କମିସନର୍ ରୂପେ ନିଯୁକ୍ତି ଦେଇଥିଲେ ।

୧୯୪୩ ମସିହାର ବଙ୍ଗ ଦୁର୍ଭିକ୍ଷବେଳେ ଯୁଦ୍ଧରତ ସୈନିକମାନଙ୍କ ପାଇଁ ବହୁପରିମାଣ ଖାଦ୍ୟଦ୍ରବ୍ୟ ପଠାଯାଉଥିଲା । ଜାପାନ ବର୍ମାକୁ ଦଖଲ କରିନେବାରୁ ସେଠାରେ ଚାଉଳ-ରପ୍ତାନୀ ବନ୍ଦହୋଇଗଲା । ଅନ୍ୟତ୍ର ବର୍ମାରେ ଅବସ୍ଥାନ କରୁଥିବା ଭାରତୀୟମାନେ ଭାରତକୁ ପଳାଇ ଆସିଲେ । ଏହି ଦୁର୍ଭିକ୍ଷରେ ପ୍ରାୟ ୫ଲକ୍ଷ ଲୋକ ପ୍ରାଣ ହରାଇଥିଲେ । ବୋଷଙ୍କ ଆଜାଦ୍ ହିଂଦ୍ ସରକାର ଲକ୍ଷ ଲକ୍ଷ ଟଙ୍କାର ଚାଉଳ ପଠାଇବାପାଇଁ ପ୍ରସ୍ତାବ ଦେଲା । କିନ୍ତୁ ଭାରତ ସରକାର ତାହା ଗ୍ରହଣ କଲେ ନାହିଁ ।

# (୪୮)

## ମୋର ଗିରଫଦାରୀ

ରେଭେନ୍ସା କଲେଜ ଅଫିସ୍ ପୋଡ଼ି ଅଭିଯୋଗରେ ଗିରଫ ହୋଇ ମୁଁ ଓ ସୁରଜ କଟକ ଜେଲରେ ରହିଲୁ । ପୂର୍ବରୁ ଗିରଫ ହୋଇ ଗୋପବନ୍ଧୁ ଚୌଧୁରୀ, ମନମୋହନ ଚୌଧୁରୀ, ରମାଦେବୀ, ଆଚାର୍ଯ୍ୟ ହରିହର ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ବିନୋଦ କାନୁନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ମଦନମୋହନ ପଟ୍ଟନାୟକ, ମାଳତୀ ଦେବୀ, ବିପିନ ବିହାରୀ ମହାନ୍ତି, ରାଧାନାଥ ରଥ ପ୍ରଭୃତି ସେଠାରେ ଥିଲେ । କଟକର ଜିଲ୍ଲା ମାଜିଷ୍ଟ୍ରେଟ ଥିଲେ ଏଲ୍.ପି.ସିଂହ, ଆଇ.ସି.ଏସ୍ । ତାଙ୍କ ବାସଭବନରୁ ବିହାରର ପ୍ରସିଦ୍ଧ ସମାଜବାଦୀ-ନେତା ଶ୍ୟାମନନ୍ଦନ ମିଶ୍ରଙ୍କୁ ଗିରଫ କରି କଟକ ଜେଲରେ ରଖାଗଲା । ଜେଲ୍‌ରେ ନିୟମ ଭଂଗ ଆନ୍ଦୋଳନର ନେତୃତ୍ୱ ନେଲେ ଶ୍ୟାମନନ୍ଦନ ମିଶ୍ର । ପ୍ରତ୍ୟେକ ଦିନ କିଛି ନା କିଛି ପ୍ରତିବାଦ, ଲାଠିମାଡ଼ । କଟକ ଜେଲ୍‌ରୁ ବ୍ରହ୍ମପୁର ଜେଲ୍‌କୁ ବଦଳି ହେଲୁ । ସେଠି ମଧ୍ୟ ସେଇକଥା । ରେଭେନ୍ସା କଲେଜ ପୋଡ଼ି ଘଟଣାରେ ମୋ ଓ ସୁରଜ୍ ବିରୁଦ୍ଧରେ କୌଣସି ପ୍ରମାଣ ନ ମିଳିବାରୁ ଆମେ ଦୁହେଁ ୧୯୪୩ ମସିହା ଫେବୃଆରୀ ବା ମାର୍ଚ୍ଚମାସରେ ଖଲାସ ହୋଇ ପୁରୀ ଗଲୁ ।

ଫରଓ୍ୱାର୍ଡ଼-ବ୍ଲକ ବେଆଇନ ଦଳ ରୂପେ ଘୋଷିତ ହୋଇସାରିଥିଲା । ଫରଓ୍ୱାର୍ଡ଼-ବ୍ଲକ୍‌ର ଗୁପ୍ତ ସଂଗଠନରେ ଆମେ ପୂର୍ବରୁ ଜଡ଼ିତ ଥିଲୁ । ନେତାଜୀଙ୍କ ଯୋଜନା ଅନୁଯାୟୀ ଆଜାଦ୍ ହିନ୍ଦ୍ ଫୌଜର ଗୋଟିଏ ଆଗୁଆଦଳ ସମୁଦ୍ରବାଟ ଦେଇ ପୁରୀରେ ପହଁଚିବାର ଥିଲା । ଫରଓ୍ୱାର୍ଡ଼ ବ୍ଲକ୍ ଗୁପ୍ତକାର୍ଯ୍ୟକ୍ରମର ଦାୟିତ୍ୱରେ ମୁଁ ପୁରୀରେ ରହିଲି । ମୋତେ 'କମାଣ୍ଡର' ବ୍ୟାଜ୍ ଦିଆଯାଇଥିଲା । ହଠାତ୍ ଦିନେ ମୋର ଓ ସୁରଜ୍‌ର ଘର ଖାନତଲାସ କରି ପୁଲିସ ଆମ ଦୁହିଁଙ୍କୁ ଗିରଫ କଲେ । ଆଜାଦ୍ ହିନ୍ଦ୍ ଫୌଜର ଆଗୁଆଦଳ ଭୁଲ୍‌ରେ କୋଣାର୍କ ନିକଟରେ ପହଁଚିଲା ବେଳକୁ ଆମେ ଗିରଫ ହୋଇସାରିଥିଲୁ । ଆମକୁ ପୁରୀ ଜେଲ୍‌କୁ ନିଆଗଲା । ସେତେବେଳକୁ ପୁରୀ ଜେଲ୍‌ରେ ଥିଲେ ନିମାପଡ଼ା-ଆନ୍ଦୋଳନରେ ଭାଗନେଇଥିବା ଛାତ୍ର ପଦ୍ମଚରଣ ସାମନ୍ତସିଂହାର, ଲୋକନାଥ ସେନାପତି, ରାମପ୍ରସାଦ ମହାନ୍ତି, ଭୁବନାନନ୍ଦ ମହାନ୍ତି, ଭବାନୀ ଚରଣ ପଟ୍ଟନାୟକ, ବୈକୁଣ୍ଠନାଥ ସେନାପତି, ପୂର୍ଣ୍ଣଚନ୍ଦ୍ର ସାହୁ ପ୍ରଭୃତି । ପୁଣି ଗିରଫ ହୋଇ ଆସିଲେ ନରସିଂହ ଚରଣ ସାମନ୍ତସିଂହାର, ଉମାପଦ ତ୍ରିପାଠୀ, ମୋତିଲାଲ ତ୍ରିପାଠୀ, ହରିହର ପୂଜାପଣ୍ଡା । କିଛିଦିନ ପରେ ପୁରୀ ଜେଲ୍‌ରୁ ଆମକୁ ବ୍ରହ୍ମପୁର କେନ୍ଦ୍ର ଜେଲ୍‌କୁ ନିଆଗଲା । ଆଇନ ଓ ଶୃଙ୍ଖଳାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଇଂରେଜ ସରକାରଙ୍କୁ ଭାରତରୁ ବିତାଡ଼ିତ କରିବାପାଇଁ ସେମାନଙ୍କ

ଶତ୍ରୁ ସୁଭାଷ ଚନ୍ଦ୍ର ବୋଷଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ବୋଲି ମୋ ବିରୁଦ୍ଧରେ ଅଭିଯୋଗ ଥିଲା । ମୁଁ ତାକୁ ଏକ ସାର୍ଟିଫିକେଟ ରୂପେ ଗ୍ରହଣକରିଥିଲି ।

## (୪୯)

## ବ୍ରହ୍ମପୁର ଜେଲ୍

ଅଗଷ୍ଟ ଆନ୍ଦୋଳନରେ ଗିରଫହୋଇ ବହୁ କର୍ମୀ ବିଭିନ୍ନ ଜେଲ୍‌ରେ ଥିଲେ । ତା'ଛଡ଼ା ଅଟକବନ୍ଦୀମାନେ ବ୍ରହ୍ମପୁରରେ ସ୍ୱତନ୍ତ୍ର ଜେଲ୍‌ରେ ଥିଲେ । ସେ ଥିଲା ଏକ ବିରାଟ ପରିବାର । କଟକ ଜିଲ୍ଲାର ଗୋପବନ୍ଧୁ ଚଉଧୁରୀ, ନବକୃଷ୍ଣ ଚଉଧୁରୀ, ମନମୋହନ ଚଉଧୁରୀ, ପରମାନନ୍ଦ ମହାନ୍ତି, ଶରତ ଚନ୍ଦ୍ର ମହାରଣା, ନିତ୍ୟାନନ୍ଦ କାନୁନ୍‌ଗୋ, ମଦନମୋହନ ପଟ୍ଟନାୟକ, ନୀଳମଣି ପ୍ରଧାନ, ସୁରେନ୍ଦ୍ରନାଥ ପଟ୍ଟନାୟକ, ଗଦାଧର ଦତ୍ତ, ଭାଗୀରଥି ମହାପାତ୍ର, ଅମିତାଭ ମହାପାତ୍ର, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୁଣନିଧି ମହାନ୍ତି, ଗୌରାଙ୍ଗ ଚରଣ ଦାସ, ବିପିନ ବିହାରୀ ମହାନ୍ତି, ଜଗନ୍ନାଥ ଦାସ, ଦ୍ୱାରିକାନାଥ ଦାସ, ରାଜକୃଷ୍ଣ ବୋଷ, ପ୍ରାଣକୃଷ୍ଣ ପଡ଼ିଆରୀ, ଜଗନ୍ନାଥ ଦାସ, ବୈକୁଣ୍ଠନାଥ ମହାନ୍ତି, ବିନୋଦ କାନୁନ୍‌ଗୋ, ସଚ୍ଚିଦାନନ୍ଦ ମହାନ୍ତି, ନରସିଂହଚରଣ ମହାନ୍ତି, ଜଗବନ୍ଧୁ ସ୍ୱାଇଁ, ଭାସ୍କର ପୃଷ୍ଟି, ଶଶିଭୂଷଣ ଦାସ, ବୈଦ୍ୟନାଥ ଦାସ, ଇନ୍ଦ୍ରମଣି ଜେନା, ନନ୍ଦ ସାହୁ, ମଥୁରାନନ୍ଦ ସାହୁ, ସୁଧୀର ଚନ୍ଦ୍ର ଘୋଷ, ଉଦୟନାଥ ଷଡ଼ଙ୍ଗୀ, ରଘୁନାଥ ମହାନ୍ତି, ବୀରକିଶୋର ଦାସ, କ୍ଷେତ୍ରମୋହନ କାନୁନ୍‌ଗୋ, ବିରଜା ପ୍ରସାଦ ରାୟ, ମାୟାଧର ମହାନ୍ତି, ମାଗୁଣି ଚରଣ କାନୁନ୍‌ଗୋ, ସଚ୍ଚିଦାନନ୍ଦ ଜେନା, ବିଶ୍ୱମ୍ଭର ପରିଡ଼ା, ଆକୁଳାନନ୍ଦ ବେହେରା, ମୁରଲୀଧର କାନୁନ୍‌ଗୋ, ଘନଶ୍ୟାମ ମହାନ୍ତି, ପୁରୁଷୋତ୍ତମ ନାଏକ, ମୌଲାନା ଆପହାର, କୃଷ୍ଣ ପ୍ରସାଦ ଘୋଷ, ଅନୀଲ ଘୋଷ, ସର୍ବାଣୀ ସେନଗୁପ୍ତ, ଗୌରୀଶଙ୍କର ସାମନ୍ତରାଏ, ବାମନ ଚରଣ ପରିଡ଼ା, ଭ୍ରମରବର ଦାସ, ବାବାଜୀ ଭୀମସେନ ଦାସ, କ୍ଷେତ୍ରମୋହନ କାନୁନ୍‌ଗୋ, ଇନ୍ଦ୍ରମଣି ଜେନା, ନାରୀନେତ୍ରୀ ରମାଦେବୀ, ମାଳତୀଦେବୀ, ଅନ୍ନପୂର୍ଣ୍ଣା ମହାରଣା, ଉତ୍ତରା ଚଉଧୁରୀ, ପ୍ରିୟମ୍ବଦା ଦେବୀ, ମଙ୍ଗଳା ସେନ୍‌ଗୁପ୍ତ, ସହଦେବ ଦାସ, ସୁବଳ ଚରଣ ଦାସ, ଫନି ପାଲ, ଗୁଣନିଧି ମହାନ୍ତି, ଗୋଲକ ବିହାରୀ ମହାରଣା, ଗନ୍ଧର୍ବ ଗୋଛାୟତ ପ୍ରଭୃତି । ଗଞ୍ଜାମ ଜିଲ୍ଲାର ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ଘନଶ୍ୟାମ ପଟ୍ଟନାୟକ, ନାରାୟଣ ପାତ୍ର, ଗୋପାଳ ଦାସ, ବାଲେଶ୍ୱରର ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, କରୁଣାକର ପାଣିଗ୍ରାହୀ, ନନ୍ଦକିଶୋର ଦାସ, ଭୈରବଚନ୍ଦ୍ର ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ସୁବାସ ଚନ୍ଦ୍ର

ମହାପାତ୍ର, ଶୈଳେନ ମହାପାତ୍ର, ରବୀନ୍ଦ୍ର ମୋହନ ଦାସ, ଆଶୁତୋଷ ରାୟ, ପ୍ୟାରିମୋହନ ଦାସ, ନୀଳାମ୍ବର ଦାସ, ଗୋକୁଳାନନ୍ଦ ମହାନ୍ତି, ଭାଗବତ ସାହୁ, ତ୍ରିଲୋଚନ ସେନାପତି, ଗୌରମୋହନ ମହାପାତ୍ର, ମହମ୍ମଦ ହନିଫ, ଶ୍ୟାମସୁନ୍ଦର ହୋତା, ପୁରୀ ଜିଲ୍ଲାର ଆଚାର୍ଯ୍ୟ ହରିହର ଦାସ, କୃପାସିନ୍ଧୁ ହୋତା, ସତ୍ୟବାଦୀ ନନ୍ଦ, ଲିଙ୍ଗରାଜ ମିଶ୍ର, ଲୋକନାଥ ମିଶ୍ର, ରାମଚନ୍ଦ୍ର ସାହୁ, ବିଶ୍ୱନାଥ ପରିଡ଼ା, ପ୍ୟାରିମୋହନ ସ୍ୱାଇଁ, ମଧୁସୂଦନ ନନ୍ଦ, ଭଗବାନ ପ୍ରତିହାରୀ, ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ଫକୀର ମିଶ୍ର, ଗଂଗାଧର ମିଶ୍ର, କୁନ୍ଦନ ରାମ, ରାମଚନ୍ଦ୍ର ଗୋଛିକାର, ବଂଶୀଧର ମଂଗରାଜ, ରାମକୃଷ୍ଣ ନନ୍ଦ, କାଶୀନାଥ ମିଶ୍ର, ବ୍ରଜସୁନ୍ଦର ଦାସ, କୃଷ୍ଣ ରଥ, ଗୌର ଚାଟାର୍ଜୀ, ଫକୀର ଚରଣ ସ୍ୱାଇଁ, କୋରାପୁଟ ଜିଲ୍ଲାର ଲକ୍ଷ୍ମଣ ନାଏକ, ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ, ରାଧାମୋହନ ସାହୁ, ସଂବଲପୁର ଜିଲ୍ଲାର ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ନୃସିଂହ ଗୁରୁ, ଦୟାନନ୍ଦ ଶତପଥୀ, ରାଜେନ୍ଦ୍ର ପଣ୍ଡା, ଢେଙ୍କାନାଳର ସାରଙ୍ଗଧର ଦାସ, ଅନୁଗୁଳର ହୃଷୀକେଶ ତ୍ରିପାଠୀ, ଆଠଗଡ଼ର ରାଧାନାଥ ରଥ । ଛାତ୍ରସାଥୀଗଣ— ରାମକୃଷ୍ଣ ପତି, ବୈଦ୍ୟନାଥ ରଥ, ବିଜୟ ଚନ୍ଦ୍ର ଦାସ, ବୀରେନ୍ ମିତ୍ର, ମୋତିଲାଲ ତ୍ରିପାଠୀ, ମନମୋହନ ମିଶ୍ର, ରାମଚନ୍ଦ୍ର ରାମ, ରାମଚନ୍ଦ୍ର ମିଶ୍ର, ବାଙ୍କବିହାରୀ ଦାସ, ସୁରଜ୍‌ମଲ୍ଲ ସାହା, ନରସିଂହ ତ୍ରିପାଠୀ, ଗୋବିନ୍ଦ ତ୍ରିପାଠୀ, ବନମାଳୀ ପଟ୍ଟନାୟକ, ଜୟକୃଷ୍ଣ ମହାନ୍ତି, ଉପେନ୍ଦ୍ର ମହାନ୍ତି, ବୀରକିଶୋର ମହାନ୍ତି, ଚିତ୍ତରଂଜନ ଦାସ, ଦେବେନ୍ଦ୍ର ମହାନ୍ତି, ମନମୋହନ ମିଶ୍ର, ରବି ଘୋଷ, ବାଙ୍କବିହାରୀ ଦାସ, ଜଗନ୍ନାଥ ମିଶ୍ର, ନରସିଂହ ଚରଣ ସାମନ୍ତସିଂହାର, ହରିହର ପୂଜାପଣ୍ଡା, ବିଶ୍ୱନାଥ ପଣ୍ଡିତ୍, ଚନ୍ଦ୍ରଶେଖର ମହାପାତ୍ର, ଉପେନ୍ଦ୍ର ମହାନ୍ତି, ନନ୍ଦକିଶୋର ପଟ୍ଟନାୟକ, ଭଗବାନ ଶତପଥୀ, ଦୋଳଗୋବିନ୍ଦ ପ୍ରଧାନ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ବଳରାମ ମହାନ୍ତି, କୁଳମଣି ମହାପାତ୍ର, ଦୁର୍ଗା ଦାସ, ପ୍ରହ୍ଲାଦ ରାୟ ଅଗ୍ରୱାଲା, ରାଧାଶ୍ୟାମ ଦାସ ଓ ଚନ୍ଦ୍ରଶେଖର ନାଏକ । ଏ ସଂପୂର୍ଣ୍ଣ ତାଲିକା ନୁହେଁ— ଲେଖୁ ଲେଖୁ ଯେଉଁ କେତେକ ନାଁ ମନେପଡ଼ିଲା ।

ଆମ ସହିତ କଟକ ଜେଲ୍‌ରୁ ବଦଳି ହୋଇ ବ୍ରହ୍ମପୁର ଜେଲ୍‌କୁ ଆସିଲେ ବିହାରର ପ୍ରଜା-ସୋସିଆଲିଷ୍ଟ ଦଳର ନେତା ଶ୍ୟାମନନ୍ଦନ ମିଶ୍ର । ବିଦେଶୀ ସରକାରକୁ ଅଚଳ କରିଦେବାପାଇଁ ଏ ଆନ୍ଦୋଳନ— ଜେଲଖାନାକୁ ମଧ୍ୟ ଅଚଳ କରିଦେବାକୁ ହେବ— ଏହା ଥିଲା ତାଙ୍କର ଉପଦେଶ । ସବୁଦିନ ନୂଆ ନୂଆ ଦାବି, ହଟ୍ଟଗୋଳ, ଜେଲ୍ ଫାଟକ ଭାଙ୍ଗିବା ଉଦ୍ୟମ, ଲାଠିମାଡ଼ । 'ଇନ୍‌କିଲାବ ଜିନ୍ଦାବାଦ୍' ଧ୍ୱନିରେ ନିର୍ଜନ ପାହାଡ଼ କମ୍ପୁଥାଏ ।

କିଛିକାଳ ଚାଲିଲା ଏମିତି— ଆମର ବହୁ କଥା ସରକାର ମାନିନେଲେ, ଶ୍ୟାମନନ୍ଦନ ମିଶ୍ର ବିହାର ଜେଲ୍‌କୁ ବଦଳିହୋଇଗଲେ ।

ବିଶ୍ୱନାଥ ପଣ୍ଡିତ୍ କୁସ୍ତି-ଆଖଡ଼ା କଲେ, ଉମାଚରଣ ପଟ୍ଟନାୟକ ମୁଦ୍‌ଗର ବୁଲାଇଲେ, ବିରଜା ପ୍ରସାଦ ରାୟ ବାଲି-ବସ୍ତା ସହିତ ମୁଷ୍ଟିଯୁଦ୍ଧ କଲେ, ମନମୋହନ ମିଶ୍ର କବିତା ଆବୃତ୍ତି କଲେ, ବୀରକିଶୋର ମହାନ୍ତି 'ଭଜନ' ଗାଇଲେ, ମହମ୍ମଦ ହନିଫ 'ବ୍ରୀଜକ୍ଲବ' କଲେ, କିଏ ସୂତା କାଟିଲେ, କିଏ ଭଲିବଲ ଖେଳିଲେ ।

କ୍ଲାସ୍ ଚାଲିଲା— ନବବାବୁ ଓ ସୁରେନ୍ଦ୍ର ଦ୍ୱିବେଦୀ 'ସମାଜବାଦ' ଓ ମୁଁ 'କଂଗ୍ରେସର ଇତିହାସ' ଆଲୋଚନା କରୁଥିଲୁ । ସ୍କୁଲ ଓ କଲେଜର ବହୁ ଛାତ୍ର ଅଟକବନ୍ଦୀ ଥିଲେ ।

ଜେଲ୍ ଭିତରେ ମଧ ଦୁଇ ମତବାଦ । ସରକାରଙ୍କ ଯୁଦ୍ଧ-ଉଦ୍ୟମ ସହଯୋଗୀ କମ୍ୟୁନିଷ୍ଟ ଓ ଯୁଦ୍ଧ ଉଦ୍ୟମ ବିରୋଧୀ କଂଗ୍ରେସ । କଳି ମୁଖ୍ୟତଃ ସମାଜବାଦୀ ଓ କମ୍ୟୁନିଷ୍ଟଙ୍କ ଭିତରେ । କେତେକ ସାଥୀ କମ୍ୟୁନିଷ୍ଟଙ୍କୁ ବାସନ୍ଦକଲେ । କେତେଥର ମୁହାଁମୁହିଁ ମଧ ହୋଇଗଲା । ତୀବ୍ର ବାଦାନୁବାଦ ଚାଲିଥିଲା ।

୧୯୪୪ ଜାନୁଆରୀ ୨୬ତାରିଖ— ସ୍ୱାଧୀନତା ଦିବସ । ଜେଲଖାନା ଭିତରେ ଜାତୀୟ ପତାକା ଉତ୍ତୋଳିତ ହେଲା । ଏ ପତାକା ହେଉଛି ଭାରତ ଛାଡ଼ି ଚାଲିଯିବାକୁ ବ୍ରିଟିଶ ସରକାରକୁ ଆହ୍ୱାନ । ସରକାର ସହନ୍ତେ କିପରି ? ଜିଲ୍ଲା ମାଜିଷ୍ଟ୍ରେଟ ଓ ପୁଲିସ ସାହେବଙ୍କ ଉପସ୍ଥିତିରେ ପୁଲିସର ଆଖିବୁଜା ନିର୍ମମ ଲାଠିମାଡ଼ରେ ଆହତ ହୋଇ ମୋ ସହିତ ବହୁ ସାଥୀ ଡାକ୍ତରଖାନାକୁ ବୁହାହେଲୁ । ଭଲ ମାଡ଼ ମାରିବା ଆନନ୍ଦରେ ପୁଲିସ ବାହିନୀ ଫେରିଗଲେ, କିନ୍ତୁ ପତାକା ନେଇପାରିଲେ ନାହିଁ । ଅସୁସ୍ଥ ମା'କୁ ଦେଖିବାପାଇଁ ଜଣେ ଜଣେ ସାଥୀ 'ପ୍ୟାନେଲ'ରେ ଖଲାସ ହେଲେ ୭ଦିନ ପାଇଁ । ଗୋଟାଏ ମଙ୍ଗଳବାର ସେ ଗଲେ, ପର ମଙ୍ଗଳବାରରେ ଜେଲ୍‌କୁ ଫେରିଆସିବା ଆଦେଶ ଥିଲା । ସେ ମଙ୍ଗଳବାର ନ ଆସିପାରି ବୁଧବାର ଆସିଲେ ଜେଲର୍ ତାଙ୍କୁ ଗ୍ରହଣ କରିବାକୁ ନାରାଜ— ଆଦେଶ ମଙ୍ଗଳବାର ଫେରିବାକୁ, ବୁଧବାର ଫେରିଲେ ସେ ରଖିବେ କେମିତି ? ସାଥୀ ଜେଲ ବାରଣ୍ଡାରେ ବସିରହିଲେ । ଜେଲର୍ ପୁଲିସ ଇନ୍ସପେକ୍ଟରଙ୍କୁ ଫୋନ୍ କଲେ ତାଙ୍କୁ ଗିରଫ କରିବାକୁ— ଇନ୍ସପେକ୍ଟର ନାରାଜ, ତାଙ୍କ ଖାତାରେ ତ ସାଥୀ ଜେଲରେ, ସେ ତାକୁ ଗିରଫ କରିବେ କେମିତି ? ସାଥୀ ଫେରିଗଲେ ତାଙ୍କ ଗାଁକୁ । କେତେମାସ ପରେ ଗିରଫ ହୋଇ ଯେଉଁଦିନ ଜେଲକୁ ଆସିଲେ, ସେହିଦିନ ତାଙ୍କ ଖଲାସ ଆଦେଶ ଆସିଲା । ସରକାରୀ ନିୟମ— ଗୋଟାଏଆଡ଼େ ଫାଇଲ ଚାଲିଛି, କ'ଣ କରାଯିବ, ତାଙ୍କୁ ଗିରଫ କର— ଅନ୍ୟଆଡ଼େ ଫାଇଲ ଚାଲିଛି, ତାଙ୍କୁ ଖଲାସ କର ବିଭିନ୍ନ ବିଭାଗର ଫାଇଲ— କାହା ସହିତ କାହାର ସଂପର୍କ ନାହିଁ ।

ନ'ନମ୍ବର ୱାର୍ଡ଼ରେ ମୋ ସହିତ ରାଜକୃଷ୍ଣ ବୋଷ, ମାଗୁଣି ଚରଣ କାନୁନ୍‌ଗୋ, ଚାଟୁବାବୁ, ଆଶୁତୋଷ ରାୟ, ମାୟାଧର ମହାନ୍ତି, ମହମଦ୍ ହନିଫ ଓ ତାଙ୍କ ପୁଅ ସ୍କୁଲଛାତ୍ର ହୋଦା । ଚାଟୁବାବୁ ପକ୍କା ଗାନ୍ଧିବାଦୀ, ସବୁବେଳେ ବସି ସୂତା କାଟୁଥାନ୍ତି,

ତାଙ୍କ କଥାବାର୍ତ୍ତା ଶୁଣିବାକୁ ଭଲଲାଗେ । ମନେପଡୁଛି– ଚିଠି ଲେଖିବା ଓ ପାଇବା ଦାବି ଉପରେ ଆନ୍ଦୋଳନ ହେଲା । ଚାଟୁବାବୁ ହସି ହସି କହିଲେ, 'ଆମେ ବାହାରେ ପୋଷ୍ଟଅଫିସ ପୋଡ଼ିଲୁ, ଜେଲ ଭିତରେ ପୋଷ୍ଟଅଫିସ ଖୋଲ ବୋଲି ଦାବି କରୁଛୁ ।' ଜଣେ ଦୁଃସ୍ଥ ସାଥୀ ସରକାରଙ୍କୁ ଆବେଦନ କଲେ ତାଙ୍କ ପରିବାରକୁ ଆର୍ଥିକ ସାହାଯ୍ୟ ଦେବାକୁ– ଚାଟୁବାବୁ କହିଲେ– ସରକାର ଯାଅ ବୋଲି ଆମେ ଆନ୍ଦୋଳନ କଲୁ, ଏବେ କହୁଛୁ ସାହାଯ୍ୟ ଦିଅ, ସାହାଯ୍ୟ ଦେବେ ତ ସେ ଯିବେ କେମିତି ? ଜେଲଖାନା ଭିତରେ ଆମେ କେତୋଟି ନାଟକ ମଞ୍ଚସ୍ଥ କରିଥିଲୁ ।

ସୁଭାଷ ବୋଷ ଶତ୍ରୁ– ବିଦେଶୀ ସରକାରକୁ ହଟାଇବା ପାଇଁ ମୁଁ ଓ ସୁରଜ୍ ବୋଷଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ– ସର୍ବଭାରତୀୟ ସ୍ତରରେ ଫରୱାର୍ଡ଼ ବ୍ଲକ୍‌ର କେତେକ ସଭ୍ୟଙ୍କ ବିରୁଦ୍ଧରେ ଶତ୍ରୁ-ଏଜେଣ୍ଟ ଅର୍ଡ଼ିନାନ୍ସ ଅନୁଯାୟୀ ବିଚାର କରିବାକୁ ସ୍ଥିର କରି କେନ୍ଦ୍ର ସରକାର ତଦନ୍ତ ଆରମ୍ଭ କଲେ ।

ସୁରଜ୍, ହରିହର ପୂଜାପଣ୍ଡା, ମୋତିଲାଲ ତ୍ରିପାଠୀ, ଉମାପଦ ତ୍ରିପାଠୀ ଓ ମୋତେ କଟକ ଜେଲ୍‌କୁ ଅଣାଗଲା । ୮ନମ୍ବର ସେଲ୍‌ରେ ଆମେ ରହିଲୁ । ପ୍ରଦେଶ ପୁଲିସ-ବିଭାଗର ଡି.ଆଇ.ଜି. ରେନର୍ ସାହେବ ତଦନ୍ତ ଦାୟିତ୍ୱ ନେଲେ । ସେ ନିଜେ ମୋତେ ଜେରା କରିବାକୁ ସ୍ଥିରକଲେ । ବହୁତ ପ୍ରଶ୍ନ– ସୁଭାଷ ବୋଷ, ଜୟପ୍ରକାଶ ନାରାୟଣ, ମୁକୁନ୍ଦଲାଲ ସରକାର, ଶୀଳଭଦ୍ର ଯାଜୀ, ଫରୱାର୍ଡ଼ ବ୍ଲକ ସହିତ ମୋର ସଂପର୍କ, ମୋ ବିରୁଦ୍ଧରେ ବିଭିନ୍ନ ପୁଲିସ ରିପୋର୍ଟ ଇତ୍ୟାଦି ଦିନ ପରେ ଦିନ । ସମସ୍ତଙ୍କୁ ଭଲଭାବରେ ଜାଣିଛି ବୋଲି କହିଲି । କହିଲି ସେମାନଙ୍କ ସହିତ ମୋର ସାକ୍ଷାତ ଓ ପରିଚୟ କଥା । ୧୯୩୯ ମସିହାରେ ବୋଷଙ୍କ କଟକ ଗସ୍ତବେଳେ ଫରୱାର୍ଡ଼-ବ୍ଲକର ଓଡ଼ିଶା ଶାଖା ଗଠନରେ ମୁଁ ସଭାରେ ବିଶେଷ ଭାଗ ନେଇଥିଲି । ବୋଷଙ୍କ ସଭାରେ ମୁଁ ଓ ଅନ୍ୟ କେତେକ ବନ୍ଧୁ ଫରୱାର୍ଡ଼-ବ୍ଲକରେ ଯୋଗଦେଇଥିଲୁ ।

ତାଙ୍କ ଅସୁବିଧା ଯେ ମୋର ଘର ଖାନତଲାସି ବେଳେ ପୁଲିସକୁ କିଛି ମିଳି ନଥିଲା । ମୋର 'କମାଣ୍ଡର' ବ୍ୟାଜ୍‌କୁ ଭାଇନା ସାଂଗେ ସାଂଗେ ନେଇଯାଇ ବାଡ଼ିଆଡ଼େ ରୋଷେଇଘର ଚାଳ ଉପରେ ଲୁଚାଇ ଦେଇଥିଲେ । ଷଡ଼ଯନ୍ତ୍ରର ପ୍ରମାଣ ମିଳୁନାହିଁ । ସାହେବ ଅଧୈର୍ଯ୍ୟ ହୋଇପଡ଼ିଲେ ।

ବକ୍ସିବଜାରସ୍ଥ ପୁଲିସ ଲାଇନରେ ତାଙ୍କ ଅଫିସକୁ ଦିନେ ମୋତେ ନେଇଗଲେ । ସାଙ୍ଗରେ ଥାଆନ୍ତି ପୁଲିସ ଇନ୍ସପେକ୍ଟର ଗଙ୍ଗାଧର ଦ୍ୱିବେଦୀ । ଚାରିଆଡ଼ ଶୂନ୍, ରାସ୍ତାରେ ପୁଲିସମାଳ । ଚାହା ପିଇବାକୁ ଦେଲେ । ମୁଁ ଜଣେ ବୁଦ୍ଧିମାନ ଯୁବକ ବୋଲି ସେ ଜାଣି ପାରିଛନ୍ତି ଏବଂ ମୋର ମଙ୍ଗଳ କାମନା କରନ୍ତି ବୋଲି କହିଲେ । ଶେଷରେ ପଚାରିଲେ– 'ତୁମେ ଓକିଲାତି ନ କରି ଏସବୁ କାର୍ଯ୍ୟରେ କାହିଁକି ଲାଗିଛ ?' 'ମୁଁ

ପାଠପଢୁଥିଲି, କିନ୍ତୁ ଆପଣ ମୋତେ ଅଯଥା ଗିରଫ କରି ଓକିଲାତି କରିବାକୁ ଦେଉନାହାଁନ୍ତି' ବୋଲି କହିଲି ।

ସାହେବ ରାଗି ଛିଡ଼ାହୋଇଗଲେ, 'ତୁମକୁ ଦେଖିନେଉଛି' କହି ପଛଦୁଆର ଖୋଲିଦେଲେ– ଅନ୍ଧାରିଆ ଘର । କିଛି ଦିଶୁନାହିଁ । ନିଶ୍ଚୟ ଅତ୍ୟାଚାର ହେବ ବୋଲି ଭୟରେ ମୁଁ ବାରଣ୍ଡା ଆଡ଼କୁ ଜୋର୍‌ରେ ଚାଲିଲି । ସାହେବ ଡାକିଲେ 'ଦ୍ୱିବେଦୀ' । ଇନ୍ସପେକ୍ଟର ଦ୍ୱିବେଦୀ ରିଭଲଭର ଦେଖାଇ ଆସିଲେ । କ'ଣ କରିବି ଜାଣିପାରିଲି ନାହିଁ, ଜୋର୍‌ରେ ତାଙ୍କୁ ଗୋଟାଏ ଚଟକଣା ଦେଇ ପଛକୁ ନ ଚାହିଁ ଜେଲ୍ ଭ୍ୟାନ୍‌ରେ ବସି ମୁଁ ଜେଲକୁ ଫେରିଆସିଲି ।

ପରେ ଭାବିଲି ସେକଥା । ଗଙ୍ଗାଧର ଦ୍ୱିବେଦୀ ଜଣେ ସବଳକାୟ ଲୋକ । ସେ ଧରିପକେଇଲେ ତ ମୁଁ ରହିଯାଇଥାନ୍ତି– ରିଭଲଭର ଦେଖାଇବା କ'ଣ ଦରକାର ଥିଲା ?

ଆମ ସହିତ ସେଲ୍‌ର ଅନ୍ୟ କୋଠରିରେ ଥିଲେ ଭାଗୀରଥି ମହାପାତ୍ର ଓ ଜଗନ୍ନାଥ ଦାସ । ଭାଗୀରଥିବାବୁ ଜମିଦାର ବଂଶଜ, ଓକିଲାତି ତ୍ୟାଗକରି ଓଡ଼ିଶା କଂଗ୍ରେସର ଗଠନରେ ଅଗ୍ରଣୀ, ସବୁ ଆନ୍ଦୋଳନରେ ଭାଗ ନେଇଛନ୍ତି । ତାଙ୍କ ସହଧର୍ମିଣୀ ସରଳାଦେବୀ ଓଡ଼ିଶାର ପ୍ରଥମ ମହିଳା ସତ୍ୟାଗ୍ରହୀ । ତାଙ୍କ ପୁତ୍ର ଅମିତାଭ ମଧ୍ୟ ଅଗଷ୍ଟ ଆନ୍ଦୋଳନରେ ବନ୍ଦୀ । ଜଗନ୍ନାଥ ଦାସ, କଣ୍ଟାପାରୀ ଜମିଦାର ରୂପେ ସୁପରିଚିତ– ପ୍ରାକ୍ତନ ବିଧାନସଭା ସଦସ୍ୟ । ଭାଗୀରଥିବାବୁ ଅତି ବୁଦ୍ଧିମାନ । ଧୈର୍ଯ୍ୟର ସହିତ ହସ ହସ ମୁହଁରେ ସେ ସବୁ ପରିସ୍ଥିତିର ମୁକାବିଲା କରିପାରନ୍ତି ବୋଲି କଂଗ୍ରେସ ମହଲରେ ବିଶ୍ୱାସ ଥିଲା । ସୁରଜ୍ ଓ ସେ ଏକାଠି ଖାଉଥିଲେ । ସୁରଜ୍ ବଡ଼ ରାଗୀ, ଫାଶୀ ହୋଇଯିବ ବୋଲି ପ୍ରଚାରରେ ମୁଣ୍ଡ ଗୋଳମାଳ । ଏମିତି ସମୟରେ ଖାଦ୍ୟ ଥାଳି ଧରିଆସିଲେ ୱାଡ଼ର, ସାଂଗରେ ଜେଲର । ଏ 'ଅଖାଦ୍ୟ' ବୋଲି ସୁରଜ୍ ଥାଳିକୁ ଜେଲର୍‌ଙ୍କ ମୁଣ୍ଡ ଉପରକୁ ଫୋପାଡ଼ିଲା, ଥାଳି ବାଜି ରକ୍ତ ବୋହିଲା । ଭାଗୀରଥିବାବୁ ଲାଗିଗଲେ ସମାଧାନରେ । କହିଲେ, 'ସୁରଜ, ଆଉ ତ କେବେ ଏମିତି ହବନାହିଁ ବୋଲି ସେ କହିଲେଣି– ଆସ, ବସ ।' ସୁରଜ୍ କହିଲା– 'ଆପଣ କହୁଛନ୍ତି, ସେ କିଛି କହିନାହାନ୍ତି । ଆପଣ ଖାଆନ୍ତୁ– ମୁଁ ଖାଇବି ନାହିଁ ।' ଭାଗୁବାବୁ ବୁଲିପଡ଼ିଲେ, କହିଲେ– 'ହଇହୋ ଜେଲର୍, ସବୁଦିନ ସେଇ ଆପତ୍ତି– କ'ଣ ଏ କଥା ?' ଜେଲର୍ ନୀରବ । ସୁରଜ୍‌କୁ କହିଲେ– 'ସେ ତ କ୍ଷମା ମାଗିଲେଣି, ଏଥରକ ଆସ ।' ସୁରଜ୍ ବସିଲା ।

ଆଉ ଦିନକର କଥା । ଜଗନ୍ନାଥବାବୁ ଓ ଉମାପଦ ତ୍ରିପାଠୀ କ୍ୟାରମ ଖେଳୁଥିଲେ । ପାଖରେ ଭାଗୀରଥିବାବୁ ବସିଥିଲେ । ଖେଳରୁ ଉଭୟଙ୍କ ଭିତରେ କଳି ହୋଇଗଲା । 'କ'ଣ କାରଣ' ବୋଲି ଆମେ ଭାଗୀରଥିବାବୁଙ୍କୁ ପଚାରିଲୁ । ସେ ହସିଲେ– କହିଲେ, 'ତୁମେ ଯେଉଁଠୁ ଶୁଣିଛ, ମୁଁ ସେଇଠୁ ଶୁଣିଛି । ମୁଁ ଟିକିଏ ଢୁଳେଇପଡ଼ିଥିଲି ।

ଭାଗୁବାବୁ ସବୁବେଳେ ମାଳିଗଡ଼ାଉଥିବେ, କେଉଁଠି କେଉଁଦିନ କ'ଣ ହେଲା ସବୁ ଖବର ତାଙ୍କ ପାଖରେ ।

କଟକ ଜେଲରୁ ବ୍ରହ୍ମପୁର ଜେଲ୍‌କୁ ବଦଳି ହେବା ଦିନ କଥା ମନେପଡୁଛି । ଜେଲ ଫାଟକ ପର୍ଯ୍ୟନ୍ତ ମୋତେ ଛାଡ଼ିବାକୁ ସେଆସିଥିଲେ– ଗୋଟିଏ ହାତରେ ମାଳି ଓ ଆର ହାତ ମୋ ପିଠିରେ । କହିଲେ, ''ତୁମେ ଜଣେ ଭାବପ୍ରବଣ ଯୁବକ । ମୁଁ ତୁମକୁ ଗୋଟିଏ କଥା କହିବି– ସମୂହ ପ୍ରାର୍ଥନାରେ ଯୋଗଦେଉଥିବ, କିନ୍ତୁ ନିଜର ପ୍ରାର୍ଥନା ମନେରଖିଥିବ ।''

ବ୍ରହ୍ମପୁର ଜେଲ୍ । ପୁଣି ସାଥୀମାନଙ୍କ ସହିତ ମିଳନ । ଆସ୍ତେ ଆସ୍ତେ ଖଲାସପର୍ବ ଆରମ୍ଭ ହେଲା । ମେଡ଼ିକାଲ ଛାତ୍ର ବୀରକିଶୋର ମହାନ୍ତି ତାଙ୍କ ଦାବି ପୂରଣ ନ ହେବାପର୍ଯ୍ୟନ୍ତ ଖଲାସ ହେବାକୁ ନାରାଜ । ଦାବି ହେଲା, ସେ ଜଣେ ଛାତ୍ର– ବିଚାର ନହୋଇ ତାଙ୍କୁ ଅଟକ କରାଯାଇଛି– କୁଆଡ଼େ ଯିବେ ସେ ? ଶୀତ ହେଉଛି, କମ୍ବଳ ନାହିଁ, ପ୍ରବଳ ମଶାବଂଶ ରକ୍ତ ଶୋଷିଲାଗିଛନ୍ତି, ମଶାରି ନାହିଁ । ଶୋଇବାକୁ ଦରକାର ଅନ୍ତତଃ ଗୋଟିଏ ଶେଯ, ଦୁଇଟି ତକିଆ ଓ ବିଛଣା ଚାଦର । ଯେତେବେଳେ ଇଚ୍ଛା ଧରିଆଣିବ, ଯେତେବେଳେ ଇଚ୍ଛା ଛାଡ଼ିଦେବ– ଏ ଅନ୍ୟାୟ ଚଳିବ ନାହିଁ, ଏସବୁ ଦେଇଦେଲେ ସେ ଚାଲିଯିବେ ।

ଦୁଇଦିନ ଏମିତି ବିତିଗଲା । ଜେଲ୍ କର୍ତ୍ତୃପକ୍ଷ କିଛି ବାଟ ଠିକ୍ କରିପାରିଲେ ନାହିଁ । ଶେଷକୁ ଜେଲ୍ ବିଭାଗର ଆଇ.ଜି. ଆସିଲେ । ସେ କହିଲେ,''ସେ ଯାହା ମାଗୁଛନ୍ତି ଦେଇଦିଅ । ପୁଲିସକୁ ଖବର ଦିଅ ଯେ ଜେଲ୍ ବାହାରେ ତାଙ୍କ ପାଖରୁ ଏସବୁ ଉଦ୍ଧାର କରିବେ ।''

ବନ୍ଧୁଙ୍କ ଇଚ୍ଛା ପୂରଣ ହେଲା । ବୁଜୁଳା ଧରି ଭଜନ ଗାଇ ସେ ଚାଲିଲେ ପୁଲିସ ଷ୍ଟେସନକୁ । ଘରକୁ ଫେରିବା ରେଳଟିକଟ କିଣି ଆମକୁ ଦେବା ଦାୟିତ୍ୱ ପୁଲିସ ଇନ୍ସପେକ୍ଟରଙ୍କର ଥିଲା ।

ନିଜ ଘର ଦୁଆରେ ଇନ୍ସପେକ୍ଟର ଅପେକ୍ଷା କରିଥାନ୍ତି । କନଷ୍ଟେବଳ ତାଙ୍କ ଘରକୁ ନେଇଗଲା । ସେ ପୁରୀ ଯିବେ । ତାଙ୍କ ଘର ମାଟିମଣ୍ଡପ ସାହିରେ ବୋଲି କହିଲେ । ଇନ୍ସପେକ୍ଟର କହିଲେ ଯେ ସେହି ସାହିର ଝିଅକୁ ସେ ବାହାହୋଇଛନ୍ତି । 'ନା' କହିଲେ । ବୀରବାବୁ ଖୁସି ହୋଇଗଲେ, ଘର ଭିତରକୁ ଧାଇଁଲେ । ବହୁଦିନ ପରେ ବାଲ୍ୟସାଥୀଙ୍କ ସହିତ ଦେଖା । ଷ୍ଟେସନ ଗଲାବେଳକୁ ବୁଜୁଳାଟି ଇନ୍ସପେକ୍ଟରଙ୍କୁ ଦେଇଗଲେ । କହିଲେ, ଏସବୁ ଜେଲ୍‌ରେ ଦେଇଦେବେ ।

(୫୦)

## ଭାରତରେ ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧ

ବର୍ମା-ଭାରତ ସୀମାନ୍ତ ଅତି ଦୁର୍ଗମ । ଘନ ଜଙ୍ଗଲ, ପାହାଡ଼ ଓ ନଦୀରେ ପୂର୍ଣ୍ଣ । ସୁବବେଳେ ବର୍ଷା । ସେପଟୁ ଶତ୍ରୁ ଆକ୍ରମଣର ସଂଭାବନା ନାହିଁ ବୋଲି ହିସାବରେ ସରକାରଙ୍କର କିଛି ପ୍ରତିରକ୍ଷା ବ୍ୟବସ୍ଥା ନଥିଲା । ସେହି ପଥଦେଇ ଆସି ଭାରତ ଆକ୍ରମଣ କରିବାକୁ ଜାପାନ ସ୍ଥିରକଲା । ଇଂରେଜ ସରକାରଙ୍କ ସେନାବାହିନୀର ଏକ 'ଯୋଗାଣକେନ୍ଦ୍ର' ଇଂଫାଲରେ ଥିଲା । ତାକୁ ପ୍ରଥମେ ଦଖଲ କରିବା ଥିଲା ଜାପାନର ଯୋଜନା । କିନ୍ତୁ ସେଥିରେ ବିଫଳ ହୋଇ ଜାପାନୀ ଫୌଜ ପଛଘୁଞ୍ଚା ଦେଲାବେଳକୁ ପ୍ରବେଶକଲେ ଆଜାଦ୍ ହିନ୍ଦ୍ ଫୌଜ । ପଛଘୁଞ୍ଚା ଦେବାକୁ ଜାପାନର ଅନୁରୋଧକୁ ନେତାଜୀ ରକ୍ଷାକଲେ ନାହିଁ । ସେ କହିଲେ— ଭାରତ ଭୂଇଁରୁ ଇଂରେଜ ଅପସାରିତ ନହେବା ପର୍ଯ୍ୟନ୍ତ ଆମ ଯାତ୍ରାର ଶେଷ ନାହିଁ ।

ଯୁଦ୍ଧ-ସରଞ୍ଜାମ, ଖାଦ୍ୟ ଓ ଔଷଧ ଯୋଗାଣ ପ୍ରଭୃତି ପ୍ରତିଶ୍ରୁତିକୁ ଜାପାନ ରକ୍ଷା କଲାନାହିଁ । ଅସ୍ତ୍ରଶସ୍ତ୍ର ବିହୀନ ଫୌଜ ତଥାପି ଚାଲିଲା ଅଦମ୍ୟ ଉତ୍ସାହରେ ଆଗକୁ— ଗୋଳି ବର୍ଷଣ ଭିତରେ ଘାସପତ୍ର ଖାଇ, ରୋଗଗ୍ରସ୍ତ ହୋଇ । ସାହାନୱାଜଙ୍କ ନେତୃତ୍ୱରେ କୋହିମା ନିକଟରେ ଫୌଜର ଜାତୀୟ ପତାକା ଉତ୍ତୋଳନ ସ୍ୱାଧୀନତା ସଂଗ୍ରାମର ସର୍ବୋତ୍ତମ ବିଜୟପର୍ବ ।

୧୯୪୪ ମସିହା ଫେବୃଆରୀ ୯ତାରିଖରେ ନେତାଜୀ ଏକ ହୁକୁମନାମାରେ କହିଥିଲେ— ଆମର ଦିଲ୍ଲୀଯାତ୍ରା ଆରମ୍ଭ ହୋଇଛି । ଆରାକାନ୍ ପର୍ବତମାଳା ଉପରେ ଜାତୀୟ ପତାକା ଉତ୍ତୋଳିତ ହୋଇଛି । ବଡ଼ଲାଟ ଭବନ ଉପରେ ଜାତୀୟ ପତାକା ଉତ୍ତୋଳିତ ନହେବା ପର୍ଯ୍ୟନ୍ତ ଏବଂ ଲାଲକିଲ୍ଲାରେ ବିଜୟ ପରେଡ଼୍ ଅନୁଷ୍ଠିତ ନ ହେବା ପର୍ଯ୍ୟନ୍ତ ଏ ଯାତ୍ରାର ଅବସାନ ନାହିଁ । ଆଜାଦ୍ ହିନ୍ଦ୍ ଫୌଜର ସୈନିକଗଣ— ପ୍ରତିଜ୍ଞା କର, 'ଜିତିବୁ ବା ମରିବୁ' । ଆମର ବିଜୟ ସୁନିଶ୍ଚିତ । 'ଇନ୍‌କିଲାବ ଜିନ୍ଦାବାଦ' 'ଆଜାଦ୍ ହିନ୍ଦ୍ ଜିନ୍ଦାବାଦ୍' ।

ବର୍ଷା ଆସିଗଲା, ଯୁଦ୍ଧ ବନ୍ଦହୋଇଗଲା । ଖାଦ୍ୟ ଓ ଔଷଧ ଅଭାବ, ରୋଗର ପ୍ରାଦୁର୍ଭାବରେ ଆଜାଦ୍ ହିନ୍ଦ୍ ଫୌଜର ବହୁ ସେନାନୀ ପ୍ରାଣ ହରାଇଲେ । ଇଂଫାଲରୁ ପଛକୁ ହଟିବାକୁ ଫୌଜ ବାଧ ହେଲା । ୧୯୪୪ମସିହା ଏପ୍ରିଲ ୪ତାରିଖରେ ନେତାଜୀ ଏକ ବାର୍ତ୍ତାରେ ଆଜାଦ୍ ହିନ୍ଦ ଫୌଜର ବୀରତ୍ୱର ପ୍ରଶଂସା କରି କହିଲେ ଯେ ମାର୍ଚ୍ଚ ମାସରେ ବର୍ମା ସୀମାନ୍ତ ପାର ହୋଇ ବହୁ ଯୁଦ୍ଧରେ ବିଜୟଲାଭ କରିବାପରେ ଆଜାଦ୍

ହିନ୍ଦ୍ ଫୌଜ ଇଂଫାଲରେ ପହଁଚିଥିଲା । ବର୍ଷା ଯୋଗୁ ଏହି ବିଜୟଯାତ୍ରା ଅଟକିଗଲା ଓ ଫୌଜ ପଛକୁ ଫେରି ଫେରି ଆସିଲା । ବର୍ଷାପରେ ପୁଣି ଯାତ୍ରା ଆରମ୍ଭ ହେବ । 'ରକ୍ତ' 'ରକ୍ତ' 'ରକ୍ତ' ଯୁଦ୍ଧର ଡାକରା ହେଉ ।

ଜାପାନ ତା'ର ସାହାଯ୍ୟ-ପ୍ରତିଶ୍ରୁତି ରଖିଲା ନାହିଁ । ଜାପାନୀ ଫୌଜ ଆଜାଦ୍ ହିନ୍ଦ୍ ଫୌଜକୁ ବିଶ୍ୱାସ କରୁନଥିଲା । ନଚେତ୍ ଇଂଫାଲ ଯୁଦ୍ଧର ପରିଣତି ଭିନ୍ନ ହୋଇଥାନ୍ତା ବୋଲି ସାହାନୱାଜ ଖାଁ ଲେଖିଛନ୍ତି ।

ଇଂଫାଲ ଓ କୋହିମାରୁ ଫେରିବା ପରେ ୧୯୪୫ ମସିହା ମଧ୍ୟଭାଗ ପର୍ଯ୍ୟନ୍ତ ଇଂରେଜ ସେନାବାହିନୀ ସହିତ ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧ ବର୍ମାରେ ଚାଲିଥିଲା । ୧୯୪୫ ମସିହା ମଇ ମାସରେ ସାହାନୱାଜ ଖାଁଙ୍କ ଫୌଜ ଆତ୍ମସମର୍ପଣ କଲେ । ଆଜାଦ୍ ହିନ୍ଦ୍ ଫୌଜର ସାହସ ଓ ବୀରତ୍ୱକୁ ଇଂରେଜ ସାମରିକ ଅଫିସରଗଣ ମଧ୍ୟ ପ୍ରଶଂସା କରିବାକୁ ବାଧ୍ୟହୋଇଛନ୍ତି ।

## (୫୧)

## ନେତାଜୀ-ଶେଷ ଖବର

ନେତାଜୀ ବର୍ମା ଛାଡ଼ିଲାବେଳେ ତାଙ୍କ ବାର୍ତ୍ତା ଥିଲା– ''ବର୍ମା ଓ ଇଂଫାଲରେ ଆମର ପରାଜୟ ସାମୟିକ ମାତ୍ର । ଯୁଦ୍ଧ ସରିନାହିଁ, କୌଣସି ପରିସ୍ଥିତିରେ ପରାଜୟ ସ୍ୱୀକାର କରିବାକୁ ମୁଁ ରାଜି ନୁହେଁ । ପୃଥିବୀରେ କୌଣସି ଶକ୍ତି ନାହିଁ, ଯାହାକି ଭାରତର ସ୍ୱାଧୀନତାକୁ ଅଟକାଇପାରିବ । ଆମର ପରାଜୟ ବିଜୟରେ ପରିଣତ ହେବ ।''

୧୯୪୫ ମସିହା ଏପ୍ରିଲ ୨୪ ତାରିଖରେ ନେତାଜୀ ରେଙ୍ଗୁନ ଛାଡ଼ି ବ୍ୟାଙ୍ଗ୍‌କ୍ ଅଭିମୁଖେ ଯାତ୍ରା ଆରମ୍ଭକରି ମଇ ମାସ ଦ୍ୱିତୀୟ ସପ୍ତାହରେ ସେଠାରେ ପହଁଚିଲେ । ହିଟ୍‌ଲର୍‌ଙ୍କ ଆତ୍ମହତ୍ୟା ଓ ଜର୍ମାନୀର ଆତ୍ମସମର୍ପଣ ହୋଇସାରିଥିଲା । ବୋଷ ମାଳୟରେ ଥିବା ସମୟରେ ୧୯୪୫ ମସିହା ଅଗଷ୍ଟ ୬ ତାରିଖରେ ହିରୋସିମା ଓ ୯ ତାରିଖରେ ନାଗାସାକି ଉପରେ ପରମାଣୁ ବୋମା ବୃଷ୍ଟି ହୋଇଥିଲା ଓ ଅଗଷ୍ଟ ୧୦ ତାରିଖରେ ଜାପାନ ଆତ୍ମସମର୍ପଣ କରିଥିଲା । ଜାପାନ ଗଲା– ଭାରତର ସ୍ୱାଧୀନତା ପାଇଁ ରୁଷ ଯିବାକୁ ପଡ଼ିବ । କିନ୍ତୁ ଯିବେ କେମିତି ? ତାଙ୍କୁ ସେଥିନିମନ୍ତେ ସାହାଯ୍ୟ କରିବାକୁ ସେ ଜାପାନ ସରକାରଙ୍କୁ ଲେଖିଲେ । ସେତେବେଳକୁ ରୁଷ-ଜାପାନ ଯୁଦ୍ଧ ଆରମ୍ଭ ହୋଇଗଲାଣି । ତାଙ୍କୁ ମାଂଚୁରିଆ ପର୍ଯ୍ୟନ୍ତ ପହଁଚାଇ ଦେବାକୁ ଜାପାନ ରାଜିହେଲା । ଅଗଷ୍ଟ ୧୭ତାରିଖରେ ସେ ସାଇଗନ୍ ଗଲେ । ତାଙ୍କ ସହିତ ତାଙ୍କର କେତେକ ଅଫିସରଙ୍କୁ

ସେ ସାଙ୍ଗରେ ନେଇଥିଲେ । କିନ୍ତୁ ସ୍ୱତନ୍ତ୍ର ଉଡ଼ାଜାହାଜର ବ୍ୟବସ୍ଥା ହୋଇପାରିଲା ନାହିଁ । ଲେଫ୍ଟନାଣ୍ଟ ଜେନେରାଲ ସିଡେଇ ମାଞ୍ଚୁରିଆର ଡାଇରେନ୍ ଯୁଦ୍ଧଭୂମିକୁ ଯାଉଥିଲେ । ବହୁ ଅନୁରୋଧ ପରେ ନେତାଜୀ ଓ ଆଜାଦ୍ ହିନ୍ଦ୍ ଫୌଜର ବରିଷ୍ଠ ସେନାପତି ହବିବୁର୍ ରହମନ୍ ସେହି ଉଡ଼ାଜାହାଜରେ ଗଲେ । ଯାତ୍ରାପଥରେ ଉଡ଼ାଜାହାଜ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହୋଇଗଲା ବୋଲି ସମ୍ବାଦ ପ୍ରକାଶ ପାଇଲା । ବୋଷ ଜୀବିତ ନା ମୃତ– ଏ ବିଷୟରେ ବାଦବିବାଦ ଚାଲିଛି– ଏବେ ମଧ୍ୟ କମିସନ୍ ବସିଛି ସତ୍ୟ ଉଦ୍‌ଘାଟନ ପାଇଁ ।

ସାହାନଓ୍ୱାଜ ଖାଁ ମୋ ସହିତ କେନ୍ଦ୍ର ମନ୍ତ୍ରିମଣ୍ଡଳର ସଭ୍ୟ ଥିଲେ । ତାଙ୍କ ସହିତ ଏ ବିଷୟରେ ବହୁ ଆଲୋଚନା ହୋଇଛି । ବୋଷଙ୍କ ସହିତ ଉଡ଼ାଜାହାଜରେ ଯାତ୍ରା କରୁଥିବା ହବିବୁର୍ ରହମନ୍‌ଙ୍କ ମତାମତ ମଧ୍ୟ ଜାଣିଛି । ବିଚାରର ବିଷୟ ହେଉଛି ଯେ ବୋଷ ଯଦି ଜୀବିତ, ତା' ହେଲେ ଭାରତୀୟ ରାଜନୀତିର ଏ ଦୁର୍ଦ୍ଦିନବେଳେ ସେ କେଉଁଠି ରହିଛନ୍ତି ? କାହିଁକି ? ଅଟଳ ବିହାରୀ ବାଜପେୟୀ ପ୍ରଧାନମନ୍ତ୍ରୀ ଥିବାବେଳେ ତାଙ୍କ ଜାପାନ ଗସ୍ତବେଳେ ବୋଷଙ୍କ ଚିତାଭସ୍ମ ଥିବା କୁହାଯାଉଥିବା ମନ୍ଦିରକୁ ଗଲେ କାହିଁକି ?

ପୃଥିବୀର ବିପ୍ଳବ-ଇତିହାସର ତୁଙ୍ଗ, ଭାରତର ଶେଷ ସ୍ୱାଧୀନତା ସମରର ପ୍ରଧାନ ସେନାପତି, ତ୍ୟାଗ ଓ ଆତ୍ମବଳିର ଜ୍ୱଳନ୍ତ ପ୍ରତୀକ ନେତାଜୀ–ଇତିହାସରେ ତାଙ୍କର ମୃତ୍ୟୁ ନାହିଁ ।

## (୫୨)

## ସିମଳା ସମ୍ମିଳନୀ

ଇଉରୋପରେ ଯୁଦ୍ଧ ସରିଆସିଥିଲା, କିନ୍ତୁ ଜାପାନ ସହିତ ଯୁଦ୍ଧ ଚାଲିଥିଲା । ଏହି ଯୁଦ୍ଧରେ ଭାରତର ସାହାଯ୍ୟ ଆବଶ୍ୟକ ବୋଲି ମନେକରି ଇଂରେଜ ସରକାର ଗାନ୍ଧିଜୀଙ୍କୁ ଖଲାସ କରିଦେଲେ । କ୍ରମେ ଅନ୍ୟାନ୍ୟ ନେତୃବୃନ୍ଦ ମଧ୍ୟ ଖଲାସ ହେଲେ । ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ସ୍ଥାନରେ ଫିଲଡ଼-ମାର୍ଶାଲ ଓ୍ୱାଭେଲ ବଡ଼ଲାଟ ହୋଇ ଆସିଲେ । ଭାରତୀୟ ସମସ୍ୟାର ସମାଧାନ ବିଷୟରେ ଆଲୋଚନା ପାଇଁ ସେ ବିଲାତ ଗଲେ । ଏକ ସ୍ୱାଧୀନ ଦେଶରୂପେ ଯୁଦ୍ଧ ବିଷୟରେ ନିଷ୍ପତ୍ତି ନେବାକୁ ଭାରତକୁ ସୁଯୋଗ ଦିଆଯିବ ବୋଲି ଭାରତ ଦାୟିତ୍ୱରେ ଥିବା ମନ୍ତ୍ରୀ ଆମେରି ସାହେବ ବ୍ରିଟିଶ ପାର୍ଲିଆମେଣ୍ଟରେ ୧୯୪୫ ମସିହା ଜୁନ୍ ୧୪ତାରିଖରେ ଘୋଷଣାକଲେ ।

ସିମଳାଠାରେ ସର୍ବଦଳୀୟ ସମ୍ମିଳନୀ ଜୁନ୍ ୨୫ତାରିଖରେ ବସିଲା । କଂଗ୍ରେସ କାର୍ଯ୍ୟକାରୀ କମିଟିର ନିଷ୍ପତ୍ତି ଅନୁଯାୟୀ ମୌଲାନା ଆଜାଦ୍ କଂଗ୍ରେସ ପ୍ରତିନିଧି ରୂପେ

ଯୋଗଦେଲେ । ମୁସଲିମ୍ ଲିଗ୍‌ର ପ୍ରତିନିଧି ହେଲେ ଜିନ୍ନା ସାହେବ । ସିମଳାରେ ଏହି ସମ୍ମିଳନୀରେ ଜାତୀୟବାଦୀ ମୁସ୍‌ଲିମ୍ ଦଳ ଓ ଶିଖ ପ୍ରତିନିଧି ମଧ୍ୟ ଯୋଗଦେଇଥିଲେ । ସରକାରଙ୍କ ପ୍ରସ୍ତାବ ହେଲା ଯେ ବଡ଼ଲାଟଙ୍କ ଏକ୍‌ଜିକିଉଟିଭ କାଉନ୍‌ସିଲର ସମସ୍ତ ସଭ୍ୟ ଭାରତୀୟ ହେବେ । କାଉନ୍‌ସିଲର ସମୂହ ନିଷ୍ପତ୍ତିକୁ ବଡ଼ଲାଟ ମାନିନେବେ ବୋଲି ୱାଭେଲ ସାହେବ ରାଜିହେଲେ । କିନ୍ତୁ ଜିନ୍ନା ସାହେବଙ୍କ ଜିଦ୍ ଯୋଗୁ ଏହି ସମ୍ମିଳନୀ ଫସରଫାଟିଗଲା । କଂଗ୍ରେସ କେବଳ ହିନ୍ଦୁ-ମେମ୍ବର ବାଛିବ— ତା'ର ତାଲିକାରେ କୌଣସି ମୁସଲମାନ ସଭ୍ୟ ରହିବେ ନାହିଁ । ମୁସଲମାନ ସଭ୍ୟ ବାଛିବାର ଦାୟିତ୍ୱ କେବଳ ମୁସ୍‌ଲିମ୍ ଲିଗ୍‌ର ଦାୟିତ୍ୱ ବୋଲି ସେ ଧରିବସିଲେ । କଂଗ୍ରେସ ଏକ ଜାତୀୟ ଦଳ, ସାଂପ୍ରଦାୟିକ ଦଳ ନୁହେଁ । ଜାତୀୟ ସ୍ୱାର୍ଥ ବିଚାରରେ କଂଗ୍ରେସ ସବୁବେଳେ ନୀତି-ନିର୍ଦ୍ଧାରଣ କରିଛି । ଜିନ୍ନାସାହେବଙ୍କ ଅଯୁକ୍ତିକର ଦାବିକୁ କଂଗ୍ରେସ ଗ୍ରହଣ କରନ୍ତା କିପରି ? ତା'ଛଡ଼ା କୌଣସି ମୁସଲମାନ-ବହୁଳ ପ୍ରଦେଶରେ ମୁସଲିମ୍-ଲିଗ୍‌ର ମନ୍ତ୍ରିମଣ୍ଡଳ ନାହିଁ । ଉତ୍ତର-ପଶ୍ଚିମ ସୀମାନ୍ତରେ କଂଗ୍ରେସ ମନ୍ତ୍ରିମଣ୍ଡଳ, ପଞ୍ଜାବରେ ଇଉନିୟନିଷ୍ଟ ପାର୍ଟିର ମନ୍ତ୍ରିମଣ୍ଡଳ, ସିନ୍ଧ୍ ଓ ଆସାମ ମନ୍ତ୍ରିମଣ୍ଡଳ କଂଗ୍ରେସ ସମର୍ଥନରେ ଚାଲିଛି । ଏ ପରିସ୍ଥିତିରେ କେଉଁ ହିସାବରେ ଜିନ୍ନାସାହେବ ମୁସଲିମ୍-ଲିଗ୍ ମୁସଲମାନ-ସଂପ୍ରଦାୟର ପ୍ରତିନିଧି ବୋଲି ଦାବି କରୁଛନ୍ତି ? ବଡ଼ଲାଟଙ୍କ ସବୁ ଉଦ୍ୟମ ବ୍ୟର୍ଥ ହେଲା ।

## (୪୩)

## ଲାଲ୍‌କିଲ୍ଲାରେ ସାହାନୱାଜ ଖାଁ ପ୍ରଭୃତିଙ୍କ ବିଚାର

ଆଜାଦ୍ ହିନ୍ଦ୍ ଫୌଜ୍‌ର ଆତ୍ମସମର୍ପଣ ପରେ ସରକାର ସେମାନଙ୍କୁ ବନ୍ଦୀ କରି ଭାରତକୁ ଆଣିଲେ ଓ ଦିଲ୍ଲୀର ଲାଲକିଲ୍ଲାରେ ରାଜଦ୍ରୋହ ଅପରାଧରେ କ୍ୟାପ୍‌ଟେନ୍ ସାହାନୱାଜ, କ୍ୟାପ୍‌ଟେନ୍ ପି.କେ. ସେଗଲ ଓ ଲେଫ୍ଟନାଣ୍ଟ ଜି.ଏସ୍. ଧୀଲନ୍‌ଙ୍କ ବିଚାର ହେଲା । ସ୍ୱତଃପ୍ରବୃତ୍ତ ଭାବେ ଦେଶସାରା ପ୍ରତିବାଦର ସ୍ୱର ଉତ୍ତୋଳିତ ହେଲା । ତା ହେବ ବୋଲି ସରକାର କେବେ ଭାବିପାରିନଥିଲେ । ଲାଲ୍‌କିଲ୍ଲାରେ ଜାତୀୟ-ପତାକା ଉତ୍ତୋଳିତ ନହେବା ପର୍ଯ୍ୟନ୍ତ ସଂଗ୍ରାମର ଅବସାନ ନାହିଁ ବୋଲି ନେତାଜୀ ବୋଷ ଆହ୍ୱାନ ଦେଇଥିଲେ । ଲାଲକିଲ୍ଲା ଦଖଲ ଥିଲା ଆଜାଦ୍ ହିଂଦ୍ ଫୌଜର ସାମରିକ ଯୋଜନା— ସେହି ଲାଲକିଲ୍ଲାରେ ପୁଣି ରାଜଦ୍ରୋହ ଅପରାଧରେ ଏହି ବୀରମାନଙ୍କ ବିଚାର ଦେଶ ଗ୍ରହଣ କରିପାରିଲା ନାହିଁ । କଂଗ୍ରେସ ନେତାଜୀ ବୋଷଙ୍କ ପନ୍ଥାକୁ ବିରୋଧକରିଥିଲା । ସୁଭାଷ ବୋଷ ଆସିଲେ ମୁଁ ତାଙ୍କ ବିରୁଦ୍ଧରେ ଲଢ଼ିବି ବୋଲି ପଣ୍ଡିତ ନେହ୍ରୁ କହିଥିଲେ ।

କିନ୍ତୁ ସମସ୍ତ ଦେଶର ପ୍ରତିବାଦ ସ୍ୱର କଂଗ୍ରେସର ମତିଗତିରେ ପରିବର୍ତ୍ତନ ଆଣିଲା । କଂଗ୍ରେସ ତରଫରୁ ଏହି ଅଫିସରମାନଙ୍କୁ ଆଇନଗତ ସାହାଯ୍ୟ ଦେବା ନିମନ୍ତେ ଏକ କମିଟି ଗଠିତ ହେଲା । ଏହି କମିଟିରେ ସ୍ୱତଃପ୍ରବୃତ୍ତଭାବେ ଭାରତର ଶ୍ରେଷ୍ଠ ଓକିଲମାନେ ଯୋଗଦାନ କରିଥିଲେ । ବହୁବର୍ଷ ପରେ ପୁଣି ପଣ୍ଡିତ ନେହୁରୁ ଓକିଲପୋଷାକ ପିନ୍ଧିଲେ । ଓଡ଼ିଶାରୁ ସ୍ୱାଧୀନତା ସଂଗ୍ରାମୀ ବ୍ରହ୍ମପୁରର ନାମଜାଦା ଓକିଲ ଉମାଚରଣ ପଟ୍ଟନାୟକ ଏହି କମିଟିରେ ଯୋଗ ଦେଇଥିଲେ । ଗାନ୍ଧିଜୀ ଲେଖିଲେ, ନେତାଜୀ ଏକ କୁହୁକ, ତାଙ୍କ ଦେଶପ୍ରୀତିର ପଟାନ୍ତର ନାହିଁ । ଅତୁଳନୀୟ ତାଙ୍କର ସାହସ । ତାଙ୍କର ଉଚ୍ଚ ଅଭିଳାଷ ସଫଳ ହେଲାନାହିଁ । ବହୁ ଉଚ୍ଚ ଅଭିଳାଷ ସଫଳ ହୋଇନାହିଁ– ସେଥିରେ କିଛି ଯାଏଆସେ ନାହିଁ । ବୋଷଙ୍କ ପ୍ରତି ମୋର ପ୍ରଶଂସାର ଭାଷା ନାହିଁ ।''

ପଣ୍ଡିତ ନେହୁରୁ କହିଲେ, ''ଆଜାଦ୍ ହିନ୍ଦ୍ ଫୌଜର ଅଫିସରଙ୍କ ବିଚାର ଏକ ଗଣ-ଜାଗରଣ ସୃଷ୍ଟି କରିଛି । ଗାଁଗହଳିରୁ ମଧ୍ୟ ସେମାନଙ୍କୁ ଆଇନଗତ ସାହାଯ୍ୟ ପାଇଁ ଅର୍ଥ ସାହାଯ୍ୟ ଆସୁଛି । ଜନମତ ଆଜାଦ୍ ହିନ୍ଦ୍ ସପକ୍ଷରେ । ଏ ବିଚାରକୁ ଚାଲୁ ରଖିବା ସରକାରଙ୍କ ପାଗଳାମି । ଏହା କେବଳ ତାଙ୍କ ବିରୁଦ୍ଧରେ ଯାଉଛି । ଏହି ବିଚାର ସ୍ୱାଧୀନତା-ଆନ୍ଦୋଳନକୁ ଆଗେଇନେବ । ଏହାର ପ୍ରଧାନ ଫଳ ହେଉଛି ଯେ ସାଧାରଣ ଲୋକ ଓ ଭାରତୀୟ ସାମରିକ ବାହିନୀ ମଧ୍ୟରେ ଦୂରତ୍ୱ ଅପସାରଣ ହୋଇଛି ଏବଂ ପରସ୍ପରକୁ ନିକଟତର କରିଛି ।''

ଅଭିଯୁକ୍ତଙ୍କ ପକ୍ଷରୁ ବିଖ୍ୟାତ ବାରିଷ୍ଟର ଭୁଲାଭାଇ ଦେଶାଇ ଜବାବସୁଆଲ କରିଥିଲେ । ସେ ଯୁକ୍ତି ଉପସ୍ଥାପନ କଲେ ଯେ ''ପରାଧୀନ ଦେଶ ସ୍ୱାଧୀନତା ହାସଲ ନିମନ୍ତେ ସଂଘବଦ୍ଧ ହୋଇ ସାମରିକ ବାହିନୀ ଗଠନ କରି ସଂଗ୍ରାମ କରିବା ଆନ୍ତର୍ଜାତିକ ଆଇନ ଦ୍ୱାରା ସ୍ୱୀକୃତ । ଏହା ରାଜଦ୍ରୋହ ନୁହେଁ । ଇଂରେଜ ସରକାରଙ୍କ ସହିତ ଆଜାଦ୍ ହିନ୍ଦ୍ ସରକାରର ଯୁଦ୍ଧରେ ସାମରିକ ବାହିନୀର କାର୍ଯ୍ୟକଳାପ ଇଂରେଜ୍ ସରକାରଙ୍କ ବିଚାର-ବହିର୍ଭୂତ ।''

ସରକାରଙ୍କ ତରଫରୁ ସାର୍ ନଓସିରୱାନ୍ ଇଞ୍ଜିନିୟର ମକଦ୍ଦମା ଲଢୁଥିଲେ । ସେ ଦେଶାଇଙ୍କ ଯୁକ୍ତିକୁ ଖଣ୍ଡନ କଲେ କିନ୍ତୁ ସ୍ୱୀକାର କଲେ ଯେ ଅଭିଯୁକ୍ତମାନେ ନିଜ ସ୍ୱାର୍ଥସାଧନ ନିମନ୍ତେ ଏହା କରିନାହାନ୍ତି, ସେମାନଙ୍କ ଉଦ୍ଦେଶ୍ୟ ମହତ୍ । ଦେଶର ସ୍ୱାଧୀନତା-ହାସଲ ସେମାନଙ୍କ ଲକ୍ଷ୍ୟ ଥିଲା । ଦଣ୍ଡାଦେଶ ହେଲାବେଳେ ଏହା ବିଚାରକୁ ନିଆଯାଉ ।

ଦୁଇମାସ କାଳ ବିଚାର ଚାଲିଲା । ଚାକିରିରୁ ବରଖାସ୍ତ ଓ ଆଜୀବନ ଦ୍ୱୀପାନ୍ତର ଦଣ୍ଡ ଆଦେଶ ଥିଲା ।

ସାମରିକ ବାହିନୀର ମୁଖ୍ୟ ଜେନେରାଲ ଅଚିନ୍‌ଲେକ୍ ଦେଶର ମତିଗତିକୁ ଠଉରାଇସାରିଥିଲେ । ସେ ହିସାବ କଲେ ଯେ ଏହି ଦଣ୍ଡାଦେଶ ଦୁଇ ଦେଶ ଭିତରେ

ତିକ୍ତତା ବୃଦ୍ଧି କରିବ । ସେ ବରଖାସ୍ତ ଆଦେଶକୁ କାଏମ୍ ରଖିଲେ ଓ ଦ୍ୱୀପାନ୍ତରଦଣ୍ଡ ଆଦେଶକୁ ରଦ୍ଦକଲେ ।

## (୫୪)

## ନୌବାହିନୀର ବିଦ୍ରୋହ

ଭାରତୀୟ ସେନାବାହିନୀରେ ବିଦ୍ରୋହସୃଷ୍ଟି କରିବା ନେତାଜୀଙ୍କ ଉଦ୍ଦେଶ୍ୟ ଥିଲା । ଆଜାଦ୍ ହିନ୍ଦ ଫୌଜ ବିଚାରର ଫଳ ତାହାହିଁ ହେଲା । ଯୁଦ୍ଧ ଆରମ୍ଭ ହେଲାବେଳେ ଦେଶର ବହୁ ଯୁବକ ସେନାବାହିନୀରେ ଯୋଗଦେଇଥିଲେ । ଯୁଦ୍ଧ ସରିଲା ପରେ ଇଂରେଜ ସରକାର ଭାରତର ସ୍ୱାଧୀନତା ଘୋଷଣା କରିବେ ବୋଲି ସେମାନେ ଆଶା ପୋଷଣ କରିଥିଲେ, କିନ୍ତୁ ତାହା ହେଲାନାହିଁ । ଭାରତୀୟ ନୌବାହିନୀରେ ଯୋଗ ଦେଇଥିବା ଭାରତୀୟଙ୍କ ଦରମା ଇଂରେଜ ଅଫିସରଙ୍କ ଦରମାଠାରୁ ବହୁତ କମ୍ ଥିଲା । ସେମାନଙ୍କୁ ନିମ୍ନମାନର ଖାଦ୍ୟ ଯୋଗାଇ ଦିଆଯାଉଥିଲା ଓ ସେମାନେ ବହୁ ଦୁର୍ବ୍ୟବହାରର ଶିକାର ହେଉଥିଲେ । ୧୯୪୬ ମସିହା ଫେବୃଆରୀ ୧୮ତାରିଖରେ ଏସବୁର ପ୍ରତିବାଦରେ ବମ୍ୱେରେ ଅବସ୍ଥିତ 'ଟାଲୱାର' ଜାହାଜର ଭାରତୀୟ ନୌସେନା ଧର୍ମଘଟ ଘୋଷଣା କଲେ । ସେମାନଙ୍କର ଦାବି ଭିତରେ ଆଜାଦ୍ ହିନ୍ଦ୍ ଫୌଜର ବିଚାରାଧୀନ ଅଫିସର ଓ ଅନ୍ୟାନ୍ୟ ରାଜନୀତିକ ବନ୍ଦୀମାନଙ୍କ ଖଲାସ ଦାବି ମଧ୍ୟ ଥିଲା ।

ଇଂରେଜ ସରକାର କିଛି ବିଚାର ନ କରି ଦମନମୂଳକ ନୀତି ଗ୍ରହଣ କଲେ । ଫଳହେଲା ଯେ, ଭାରତର ବିଭିନ୍ନ ସ୍ଥାନରେ ଅବସ୍ଥାପିତ ନୌବାହିନୀକୁ ମଧ୍ୟ ଧର୍ମଘଟ ବ୍ୟାପିଲା । 'ଇଂରେଜ ଭାରତରୁ ହଟିଯାଅ' ଓ 'ହିନ୍ଦୁସ୍ଥାନ ଜିନ୍ଦାବାଦ' ଧ୍ୱନି ବ୍ୟାପକ ହେଲା । ଏହି ଆନ୍ଦୋଳନରେ ହିନ୍ଦୁ-ମୁସଲମାନମାନେ ମିଳିତଭାବେ ଯୋଗ ଦେଇଥିଲେ । ବମ୍ୱେର ସାଧାରଣ ଜନତା ନୌବାହନୀ ସପକ୍ଷରେ ଆନ୍ଦୋଳନ କଲେ ଓ ସେମାନଙ୍କୁ ଖାଦ୍ୟ ଓ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ ଯୋଗାଇଲେ । ଫେବୃଆରୀ ୨୧ ତାରିଖରେ ଭାରତୀୟ ନୌସେନାନୀ ଲଢ଼େଇ ମଧ୍ୟ ଆରମ୍ଭ କରିଦେଲେ । ସମାଜବାଦୀ ଦଳର ନେତା ଅଚ୍ୟୁତ ପଟ୍ଟବର୍ଦ୍ଧନ ଓ ଶ୍ରୀମତୀ ଅରୁଣା ଆସଫ ଅଲ୍ଲୀ ବମ୍ୱେଜନତାର ନେତୃତ୍ୱ ନେଲେ । କିନ୍ତୁ ଉଭୟେ କଂଗ୍ରେସ ଓ ମୁସଲିମ୍-ଲିଗ୍ ଏହାର ବିରୋଧ କଲେ । ମହାତ୍ମା ଗାନ୍ଧୀ ଓ ପଣ୍ଡିତ ନେହୁରୁ ହିଂସାଜନିତ କାର୍ଯ୍ୟକଳାପକୁ ବିରୋଧ କରିଥିଲେ । ଧର୍ମଘଟ ସ୍ଥଗିତ ରଖିବାକୁ ସର୍ଦ୍ଦାର ପଟେଲ ଉପଦେଶ ଦେଲେ । ଫେବୃଆରୀ ୨୩ ତାରିଖରେ ବିଦ୍ରୋହୀମାନେ ଆତ୍ମସମର୍ପଣକଲେ ।

ଆଜାଦ୍ ହିନ୍ଦ୍ ଫୌଜ ଅଫିସରଙ୍କ ବିଚାର ଓ ସାମରିକ ବାହିନୀର ବିଦ୍ରୋହ ଦେଶରେ ପୁଣି ନବଜାଗରଣ ସୃଷ୍ଟି କଲା । ବିହାର ଓ ଦିଲ୍ଲୀ ପୁଲିସ୍ ବାହିନୀ, ରେଳବାଇ ବିଭାଗ ଓ ପୋଷ୍ଟ-ଟେଲିଗ୍ରାଫ ବିଭାଗରେ ଶ୍ରମିକ ଧର୍ମଘଟ ହେଲା । ଦେଶବ୍ୟାପୀ ହରତାଳ ଓ ଇଂରେଜ ବିରୋଧୀ ଆନ୍ଦୋଳନ ହେଲା । ସାମରିକ ଓ ପୁଲିସ ବାହିନୀ ଥିଲା ଇଂରେଜ ସରକାରଙ୍କ ଭାରତରେ ସ୍ଥିତିର ମେରୁଦଣ୍ଡ, ସେ ଭାଙ୍ଗିଗଲା । ଭାରତରେ ଆଉ ଶାସନ ଚଳିବ ନାହିଁ ବୋଲି ଇଂରେଜ ସରକାର ହୃଦୟଙ୍ଗମ କରି ୧୯୪୮ ମସିହା ଜୁନ୍ ମାସ ସୁଦ୍ଧା ସେ ଭାରତ ଛାଡ଼ିବେ ବୋଲି ଘୋଷଣା ପ୍ରକାଶ ପାଇଲା । ଆଜାଦ୍ ହିନ୍ଦ୍ ସରକାରର ପରାଜୟ ବିଜୟରେ ପରିଣତି ହେବ ବୋଲି ନେତାଜୀ ବୋଷଙ୍କ ଭବିଷ୍ୟତ ବାଣୀ ସତ୍ୟ ହେଲା ।

## (୫୫)

## ମୋର ସାମ୍ବାଦିକତା

ଏହି ସମୟରେ ବ୍ରିଟିଶ ସରକାରର ପରିବର୍ତ୍ତନ ହେଲା । ନିର୍ବାଚନରେ ଛାଠଦଳର ପରାଜୟ ହେଲା, ଶ୍ରମିକଦଳ ବିଜୟୀ ହେଲା । ଆଟ୍‌ଲି ସାହେବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଭାରତର କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥାସଭା ନିର୍ବାଚନ ହେବ ବୋଲି ବଡ଼ଲାଟ ୱାଭେଲ ଘୋଷଣା କଲେ । ବହୁ ରାଜ୍ୟରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା ସତ, କିନ୍ତୁ ମୁସଲିମ୍ ନିର୍ବାଚନ-ମଣ୍ଡଳୀଗୁଡ଼ିକରେ ଲିଗ୍ ବହୁସଂଖ୍ୟାରେ ବିଜୟୀ ହେଲା । 'ପାକିସ୍ଥାନ' ସ୍ଲୋଗାନକୁ ଭିତ୍ତିକରି ଲିଗ୍ ନିର୍ବାଚନ ଲଢ଼ିଥିଲା । ସୀମାନ୍ତ ପ୍ରଦେଶ ମୁସଲମାନ-ବହୁଳ ହେଲେ ମଧ୍ୟ ସେଠାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ପଞ୍ଜାବ ଓ ସିଂଧ ପ୍ରଦେଶରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା ଏବଂ ମହତାବବାବୁ ପ୍ରଧାନମନ୍ତ୍ରୀ ହେଲେ । ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ପଣ୍ଡିତ ଲିଙ୍ଗରାଜ ମିଶ୍ର ମନ୍ତ୍ରୀ ହେଲେ ।

ଏହି ସମୟରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ଆଜାଦ-ହିନ୍ଦ ଫୌଜର ସେନାନୀର ସାହାଯ୍ୟ ନିମନ୍ତେ ଗୋଟିଏ ରିଲିଫ ଓ ଥଇଥାନ କମିଟି ଗଠିତ ହେଲା । ମହତାବବାବୁ ଓଡ଼ିଶା-ଶାଖାର ସଭାପତି ହେଲେ । ମୁଁ ବ୍ରହ୍ମପୁର ଜେଲରୁ ୧୯୪୫ ମସିହା ସେପ୍ଟେମ୍ବର ୧୨ ତାରିଖରେ ଖଲାସ ହୋଇ ପୁରୀରେ ଘରେ ରହୁଥିଲି । ଦିନେ ମହତାବବାବୁ, ନବବାବୁ ଓ ବିଜୁଭାଇ ପୁରୀରେ ପହଞ୍ଚିଲେ ଓ ତାଙ୍କ ଅନୁରୋଧକ୍ରମେ

କମିଟିର ସାଧାରଣ ସଂପାଦକଭାବେ ମୁଁ କଟକ ଆସି ସାହେବଜାଦା ବଜାରରେ କଂଗ୍ରେସ ଅଫିସ ନିକଟରେ ଗୋଟିଏ ଭଡ଼ାଘରେ ରହିଲି ।

ଏହି ସମୟରେ ଶରତଚନ୍ଦ୍ର ବୋଷଙ୍କ ଉଦ୍ୟମରେ କଲିକତାର 'ଦି ନେସନ୍' ନାମରେ ଏକ ଦୈନିକ ପ୍ରକାଶିତ ହେଲା । ମୁଁ ତା'ର ଓ ହିନ୍ଦ-ପ୍ରେସ୍ ନାମକ ଏକ ସଂବାଦସଂସ୍ଥାର ଓଡ଼ିଶା ପ୍ରତିନିଧି ହେଲି । ଲିଙ୍ଗରାଜବାବୁ ମନ୍ତ୍ରୀ ହେଲାପରେ ରାଧାନାଥ ରଥ ସମାଜ ସଂପାଦକ ହେଲେ । ତାଙ୍କ ପ୍ରସ୍ତାବରେ ସମ୍ମତ ହୋଇ ମୁଁ 'ସମାଜ'ର ସହକାରୀ ସଂପାଦକ ରୂପେ ଯୋଗଦେଲି । ସେତେବେଳେ ସମାଜ ପ୍ରେସ୍ ନିମଚଉଡ଼ିର ଗୋଟିଏ ଗଳି ଭିତରେ ଭଡ଼ାଘରେ ଚାଲିଥିଲା । ମୋ ବାଦ୍ ଅନ୍ୟ ସହକାରୀ ସଂପାଦକ ଥିଲେ କୃଷ୍ଣବାବୁ (ରାଧାନାଥବାବୁଙ୍କ ଭାଇ), କବି ଅନନ୍ତ ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ର ଓ ବଳରାମ ମହାନ୍ତି । ଉଦୟନାଥ ଷଡ଼ଙ୍ଗୀ ବାର୍ତ୍ତା ସଂପାଦକ ଥିଲେ । ସମସ୍ତେ ସ୍ୱାଧୀନତା ସଂଗ୍ରାମୀ । ଏହି ସମୟରେ 'ରୁବି' ଜୀବନ-ବୀମା କଂପାନୀର ଓଡ଼ିଶା-ମୁଖ୍ୟ ଭାବେ ମଧ୍ୟ କେତେମାସ କାମ କରିଥିଲି । ମୋ ଘର ବିଭିନ୍ନ କ୍ଷେତ୍ରରେ କେତେକ ଉଦୀୟମାନ ଯୁବକଙ୍କର ଆଡ୍ଡାସ୍ଥଳୀ ଥିଲା । ରାଜନୀତି ଚର୍ଚ୍ଚା ସଂଗେ ସଂଗେ ଭଲିବଲ ଖେଳ ହେଉଥିଲା ଓ କଟକ ଫୁଟବଲ କ୍ଲବ ଗଠିତ ହୋଇଥିଲା । ମୁଁ ତା'ର ସଭାପତି ଥିଲି । ପରେ ସନ୍‌ସାଇନ୍ କ୍ଲବର ମଧ୍ୟ ସଭାପତି ହୋଇଥିଲି । ଓଡ଼ିଶା ଏଥେଲେଟିକ୍ ଆସୋସିଏସନର କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲି । ଓଡ଼ିଶା କ୍ରିକେଟ ଆସୋସିଏସନ୍‌ର ପ୍ରତିଷ୍ଠାତା-ସଭ୍ୟମାନଙ୍କ ମଧ୍ୟରୁ ଜଣେ ଥିଲି ।

(୫୬)

## କ୍ୟାବିନେଟ ମିଶନ୍ ପ୍ରସ୍ତାବ

୧୯୪୬ ମସିହା ବେଳକୁ ପୃଥିବୀର ପରିସ୍ଥିତି ସଂପୂର୍ଣ୍ଣ ବଦଳିଯାଇଥିଲା । ବ୍ରିଟେନରେ କାଠ-ଦଳ ନିର୍ବାଚନରେ ହାରିଗଲା ଓ ଶ୍ରମିକଦଳ କ୍ଷମତାକୁ ଆସିଲା । ୧୯୪୨ଠାରୁ ୧୯୪୬ପର୍ଯ୍ୟନ୍ତ ସ୍ୱାଧୀନତା ଦାବି ଉପରେ କ୍ରମାଗତ ଆନ୍ଦୋଳନ ଲାଗିରହିଥିଲା । ଆଜାଦ୍‌ହିନ୍ଦ୍ ଫୌଜର ବିଚାର ଓ ନୌବାହିନୀ ବିଦ୍ରୋହ ଫଳରେ ସାମରିକବାହିନୀ ଓ ଜନସାଧାରଣଙ୍କ ମଧ୍ୟରେ ଥିବା ଦୂରତ୍ୱ ଅପସାରିତ ହୋଇସାରିଥିଲା । ୧୯୪୬ରେ ଶ୍ରମିକ-ଧର୍ମଘଟ ବ୍ୟାପକ ହେଲା । ସରକାରୀ କର୍ମଚାରୀ ମଧ୍ୟ ଧର୍ମଘଟ କରିବାକୁ କୁଣ୍ଠିତ ହେଲେନାହିଁ । ଡାକ-ତାର ବିଭାଗ ଧର୍ମଘଟ, ରେଳକର୍ମଚାରୀ ଧର୍ମଘଟ ସାଂଗକୁ କୃଷକ-ଆନ୍ଦୋଳନ ବ୍ରିଟିଶ ସରକାରଙ୍କୁ ଚହଲାଇ

ଦେଲା । ଏହି ଗଣଆନ୍ଦୋଳନରେ ଛାତ୍ରସମାଜର ବିଶେଷ ଭୂମିକା ରହିଥିଲା । ଦମନନୀତିର ଆଶ୍ରୟରେ ଆଉ ଭାରତରେ ଶାସନ ପରିଚାଳନା ଅସମ୍ଭବ ବୋଲି ବ୍ରିଟିଶ ସରକାର ହୃଦୟଙ୍ଗମ କଲେ । ୧୯୪୬ ମସିହା ମାର୍ଚ୍ଚମାସରେ ବ୍ରିଟିଶ ପାର୍ଲିଆମେଣ୍ଟରେ ପ୍ରଧାନମନ୍ତ୍ରୀ ଆଟଲିସାହେବ ଯେଉଁ ଘୋଷଣା କଲେ ତାର ସାରମର୍ମ ହେଲା– ଉଭୟପକ୍ଷର ଭୁଲ ରହିଛି, ତାର ଆଲୋଚନାରେ କିଛି ଲାଭ ନାହିଁ । ଅତୀତକୁ ଭୁଲିଯାଇ ଭବିଷ୍ୟତ କଥା ଚିନ୍ତାକରିବାକୁହେବ । ଭାରତବାସୀଙ୍କ ମଧ୍ୟରେ ଯାହା ମତପାର୍ଥକ୍ୟ ଥାଉ ପଛକେ, ସ୍ୱାଧୀନତା-ଦାବି ଉପରେ ସମସ୍ତେ ଏକମତ । ଏପରିକି ସେନାବାହିନୀ ଭିତରେ ମଧ୍ୟ ସେହି ପିପାସା ଜାଗ୍ରତ ହୋଇଛି ।

ଭାରତ ସମସ୍ୟାର ସମାଧାନ ନିମନ୍ତେ ବ୍ରିଟିଶ ମନ୍ତ୍ରିମଣ୍ଡଳର ଗୋଟିଏ ପ୍ରତିନିଧିଦଳ ଭାରତ ଆସିଲେ । ସେମାନେ ହେଲେ ଲର୍ଡ଼ ପେଥିକଲରେନ୍ସ, ସାର ଷ୍ଟାଫୋଡ଼ କ୍ରିପ୍ସ ଓ ଏ.ଭି. ଆଲେକଜାଣ୍ଡାର– ସମସ୍ତେ ମନ୍ତ୍ରୀ । କ୍ୟାବିନେଟ୍ ମିଶନ୍ ପ୍ରସ୍ତାବର ସାରାଂଶ ହେଲା ଯେ''କେନ୍ଦ୍ରରେ ଏକ ଅଭିଭକ୍ତ ସରକାର ଗଠିତ ହେବ । ଦେଶୀୟ ରାଜ୍ୟଗୁଡ଼ିକ ସେଥିରେ ସାମିଲ ହେବେ । ପ୍ରଦେଶଗୁଡ଼ିକ ତିନି ଗ୍ରୁପରେ ବିଭକ୍ତ ହେବ । ଗ୍ରୁପ୍ 'ଏ'ରେ ରହିବ ମାନ୍ଦ୍ରାଜ, ବମ୍ବେ, ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ, ବିହାର ଓ ଓଡ଼ିଶା, ଗ୍ରୁପ୍ 'ବି'ରେ ରହିବ ପଞ୍ଜାବ, ସିଂଧ, ସୀମାନ୍ତପ୍ରଦେଶ ଓ ବ୍ରିଟିଶ ବେଲୁଚିସ୍ଥାନ, 'ସି'ଗ୍ରୁପ୍‌ରେ ରହିବ କେବଳ ବଙ୍ଗଳା ଓ ଆସାମ । କେବଳ ସାମରିକ ବିଭାଗ, ବୈଦେଶିକ ବିଭାଗ ଓ ଯାତାୟାତ ବ୍ୟବସ୍ଥା ବିଭାଗ କେନ୍ଦ୍ର ସରକାରଙ୍କ ଦାୟିତ୍ୱ ହେବ ଓ ଅନ୍ୟ ସବୁ ବିଭାଗ ପ୍ରାଦେଶିକ ସରକାରଙ୍କ ଦାୟିତ୍ୱରେ ରହିବ । 'ବି' ଓ 'ସି' ଜୋନ୍‌ରେ ମୁସଲମାନ ସଂପ୍ରଦାୟର ସଂଖ୍ୟାଗରିଷ୍ଠତା ଯୋଗୁ ତାଙ୍କର କୌଣସି ଭୟର କାରଣ ରହିବ ନାହିଁ । ପ୍ରତ୍ୟେକ ୧୦ବର୍ଷରେ ସଂବିଧାନର ସଂଶୋଧନ ପାଇଁ ରାଜ୍ୟ ଦାବି କରିପାରିବ । ଦେଶର ସଂବିଧାନ ଗଠନ ନିମନ୍ତେ ଗୋଟିଏ ଶାସନ-ବିଧାୟକ ସଭା ଗଠିତ ହେବ । ଜନସଂଖ୍ୟାକୁ ବିଚାରକୁ ନେଇ ଶାସନବିଧାୟକ ସଭାରେ ପ୍ରତ୍ୟେକ ରାଜ୍ୟର 'ସଂଖ୍ୟା' ନିରୂପିତ ହେବ । ତା' ଭିତରୁ ପୁଣି ଜନସଂଖ୍ୟା ବିଚାରରେ ପ୍ରତ୍ୟେକ ସଂପ୍ରଦାୟର ସଂଖ୍ୟା ନିରୂପିତ ହେବ । ଶାସନ ବିଧାୟକ ସଭ୍ୟଗଣ ପ୍ରାଦେଶିକ ବିଧାନସଭା ଦ୍ୱାରା ନିର୍ବାଚିତ ହେବେ ।

ଯେତେ ଚଞ୍ଚଳ ସମ୍ଭବ, ପ୍ରଧାନ ରାଜନୀତିକ ଦଳର ପ୍ରତିନିଧିଙ୍କୁ ନେଇ ଏକ ମଧ୍ୟବର୍ତ୍ତୀକାଳୀନ ସରକାର ଗଠିତ ହେବ । ଭାରତ ବିଭାଜନ ପ୍ରସ୍ତାବକୁ କ୍ୟାବିନେଟ୍ ମିଶନ ଗ୍ରହଣ କଲେନାହିଁ ।

ବ୍ରିଟିଶ ସରକାର ସେପର୍ଯ୍ୟନ୍ତ ଯେତେ ପ୍ରସ୍ତାବ ଦେଇଛନ୍ତି, ଏ ପ୍ରସ୍ତାବ ସବୁଠାରୁ ଉତ୍କୃଷ୍ଟ ବୋଲି ଗାନ୍ଧିଜୀ ମତଦେଲେ । ଭାରତ ବିଭାଜନର ଆଶଙ୍କା ଦୂର ହେଲାପରି ମନେହେଲା ।

ଏପ୍ରିଲ ୧୬ତାରିଖରେ ବହୁଦିଗରୁ ଆଲୋଚନା ପରେ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଏ ପ୍ରସ୍ତାବକୁ ଗ୍ରହଣ କରାଗଲା । ନିଖିଳ-ଭାରତ କଂଗ୍ରେସ କମିଟି ବୈଠକରେ ବାମପନ୍ଥୀ ସଭ୍ୟ ଏହାର ବିରୋଧ କରିଥିଲେ । ତିନିଦିନ ଧରି ମୁସ୍‌ଲିମ୍ ଲିଗ୍‌ର ବୈଠକ ବସିଲା । ପାକିସ୍ଥାନ ଗଠନପାଇଁ ଲିଗ୍‌ର ଦାବି ଗ୍ରହଣ କରିବାକୁ ମିଶନ୍ ପ୍ରସ୍ତୁତ ନୁହେଁ– କ'ଣ କରାଯିବ ? ଜିନ୍ନାସାହେବ ପରାମର୍ଶ ଦେଲେ ଯେ ଯେତିକି ପାଇଛୁ ତାଠାରୁ ବେଶୀ ଆଶାକରିବା ଉଚିତ ନୁହେଁ । ମୁସଲିମ୍ ଲିଗ୍ ପ୍ରସ୍ତାବରେ ରାଜିହେଲେ ।

ସମସ୍ୟାର ସମାଧାନ ହୋଇଗଲାବୋଲି ଆଶା ଅତିଶୀଘ୍ର ଉଭେଇଗଲା । ୧୯୪୬ ମସିହାରେ ମୌଲାନା ଆଜାଦ୍‌ଙ୍କ ପରେ ପଣ୍ଡିତ ନେହୁରୁ କଂଗ୍ରେସ ସଭାପତି ଥାଆନ୍ତି । କଂଗ୍ରେସ କ୍ୟାବିନେଟ୍ ମିଶନର ପ୍ରସ୍ତାବକୁ ପୂରାପୂରି ଗ୍ରହଣ କରିଛି କି ? ମଧ୍ୟବର୍ତ୍ତୀ-କାଳୀନ ସରକାର ଗଠନ ବିଷୟରେ ମିଶନ୍‌ର ପ୍ରସ୍ତାବକୁ ଗ୍ରହଣ କରିଛି କି ? ପଣ୍ଡିତ ନେହୁରୁ ଉତ୍ତର ଦେଲେ– କେବଳ ଶାସନ ବିଧାୟକ ସଭାରେ ଯୋଗଦେବାକୁ କଂଗ୍ରେସ ନିଷ୍ପତ୍ତି ନେଇଛି, ପ୍ରୟୋଜନ ପଡ଼ିଲେ କଂଗ୍ରେସ ପ୍ରସ୍ତାବକୁ ପରିବର୍ତ୍ତନ କରିପାରେ ।

ମିଶନର ପ୍ରସ୍ତାବରେ ରାଜି ହେବାକୁ ଜିନ୍ନା ପରାମର୍ଶ ଦେଇଥିଲେ ମଧ୍ୟ ସେଥିରେ ସେ ଖୁସି ନଥିଲେ । ପଣ୍ଡିତ ନେହୁରୁଙ୍କ ଉତ୍ତରରେ ସେ ଡରିଗଲେ । ପୁଣି ଲିଗ୍-କାଉନ୍‌ସିଲର ବୈଠକ ବସିଲା । ଶାସନ-ବିଧାୟକ ସଭାରେ କଂଗ୍ରେସ ସଖ୍ୟାଗରିଷ୍ଠ ହେବ ଏବଂ ଲିଗ୍ ପରେ ନିଷ୍ପତ୍ତିକୁ ମାନିନେବାକୁ ବାଧ୍ୟ ହେବ– ଏଇ ଭୟ ସଭ୍ୟମାନଙ୍କର ହେଲା । ପୁଣି ପାକିସ୍ଥାନ ଦାବି ଉତ୍‌ଥାପିତ ହେଲା । ଶେଷରେ ମିଶନ୍‌ର ପ୍ରସ୍ତାବକୁ ଅଗ୍ରାହ୍ୟ କରିବା ସଂଗେ ସଂଗେ ଦେଶବ୍ୟାପୀ ଆନ୍ଦୋଳନ କରିବାକୁ କାଉନ୍‌ସିଲ ନିଷ୍ପତ୍ତି ନେଲା । ଲିଗ୍‌ନେତା ପଞ୍ଜାବର ମାମଡୋର ନବାବ କହିଲେ ''ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ ମୁଁ ମୁସଲମାନ ଭାଇମାନଙ୍କୁ ନିବେଦନ କରୁଛି । ଯୁଦ୍ଧ ହେଲେ ଆମେ କେବେ ପଛେଇ ଯିବୁନାହିଁ ।'' ବଙ୍ଗଳାର ପ୍ରଧାନମନ୍ତ୍ରୀ ସୁରାଓ୍ୟାର୍ଦ୍ଦି କହିଲେ, ''କଂଗ୍ରେସ ଜାଣିରଖିବା ଉଚିତ ଯେ ସେମାନେ କେବଳ ମୁଷ୍ଟିମେୟ କ୍ଷମତାଲୋଭୀ ଲୋକଙ୍କ ସହିତ ଲଢୁନାହାନ୍ତି, ଏହା ହେଉଛି ଜୀବନପାଇଁ ଲଢୁଥିବା ଏକ ଜାତିର ଯୁଦ୍ଧ । ଆମେ କେବଳ ଜିନ୍ନାସାହେବଙ୍କ ଡାକରାକୁ ଅପେକ୍ଷାକରିଛୁ ।'' ଜିନ୍ନା କହିଲେ– ''ଶାସନତାନ୍ତ୍ରିକ ଉପାୟରେ ଆମର ଆଉ ବିଶ୍ୱାସ ନାହିଁ, ଆଜି ଆମେ ଏକ ପିସ୍ତଲ ଆବିଷ୍କାର କରିଛୁ ଏବଂ ତାକୁ ବ୍ୟବହାର କରିବା ପାଇଁ ପ୍ରସ୍ତୁତ ଅଛୁ ।''

ଏକ ତ୍ରିଶଙ୍କୁ ଅବସ୍ଥା । ଯେଉଁ ଦଳ ରାଜିହେବ ତାକୁ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଡାକିବା ଉଚିତ ବୋଲି ଓ୍ୟାଭେଲ ସାହେବ ସ୍ଥିରକଲେ । ବ୍ରିଟିଶ ସରକାରଙ୍କ ସହିତ ଆଲୋଚନା ପରେ ଅଗଷ୍ଟ ୧୬ତାରିଖରେ କଂଗ୍ରେସ ସଭାପତି ପଣ୍ଡିତ ନେହୁରୁଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସେ ଆମନ୍ତ୍ରଣ କଲେ ।

ଅଗଷ୍ଟ ୧୬ତାରିଖ– ଦେଶର ଇତିହାସରେ ଏକ କଳା-ଦିବସ । ସେ ଦିନକୁ ଏକ ଛୁଟି ଦିବସ ରୂପେ ବଙ୍ଗର ଲିଗ୍ ସରକାରଙ୍କ ଘୋଷଣା ଆନ୍ଦୋଳନକାରୀଙ୍କୁ ଇନ୍ଧନ ଯୋଗାଇଲା । ସେଦିନ କଲିକତା ସହର ଜଳିଲା । ଲିଗ୍ ସମର୍ଥକ ମୁସଲମାନମାନେ ଦଳବଦ୍ଧ ହୋଇ ହିନ୍ଦୁମାନଙ୍କ ଉପରେ ସଶସ୍ତ୍ର ଆକ୍ରମଣ କଲେ । ହିନ୍ଦୁ ବସ୍ତି ପୋଡ଼ିଗଲା । ମୃତ ବ୍ୟକ୍ତିଙ୍କ ରକ୍ତରେ କଲିକତା-ରାସ୍ତା ରଂଜିତ ହୋଇଗଲା । ନାହିଁନଥିବା ଗୃହଯୁଦ୍ଧ ଆରମ୍ଭ ହୋଇଗଲା । ପୁଲିସ ଓ ସାମରିକ ବାହିନୀ କେବଳ ଦେଖଣାହାରି ହୋଇ ରହିଲେ । ଏହାପରେ ହିନ୍ଦୁମାନଙ୍କର ପ୍ରତିଆକ୍ରମଣ ଆରମ୍ଭ ହୋଇଗଲା ।

ଆନ୍ଦୋଳନକୁ ବଙ୍ଗଳାର ଲିଗ୍ ମନ୍ତ୍ରିମଣ୍ଡଳର ପୂର୍ଣ୍ଣ ସମର୍ଥନ । ସୁରାୱାର୍ଦ୍ଦିଙ୍କ ଚକ୍ରାନ୍ତରେ ନୋଆଖାଲିରେ ସଂଖ୍ୟାଗରିଷ୍ଠ ମୁସଲମାନଗଣ ହିନ୍ଦୁମାନଙ୍କ ଉପରେ ଆକ୍ରମଣ କଲେ । ନାହିଁନଥିବା ହିଂସା । କୁଢ଼ କୁଢ଼ ହିନ୍ଦୁଙ୍କ ଶବ । କଂଗ୍ରେସ ବିବ୍ରତ ହୋଇପଡ଼ିଲା । ହିଂସାର ପ୍ରତିରୋଧ ପାଇଁ ମହାତ୍ମା ଗାନ୍ଧୀ ନୋଆଖାଲି ଓ କଲିକତା ଯାଇ ଅନଶନ କଲେ । ୧୯୪୬ ମସିହା ନଭେମ୍ବର ୧୬ ତାରିଖରେ କଂଗ୍ରେସର ମିରଟ ଅଧିବେଶନରେ ତରବାରିକୁ ତରବାରି ଦ୍ୱାରା ପ୍ରତିହତ କରାଯିବ ବୋଲି ସର୍ଦ୍ଦାର ପଟେଲ କହିଲେ ।

ନୋଆଖାଲି ଓ କଲିକତାରେ ଘଟୁଥିବା ଘଟଣାର ପ୍ରତିକ୍ରିୟା ବିହାରରେ ପ୍ରକାଶ ପାଇଲା । ସେଠାରେ ଓଲଟା ମୁସଲମାନଙ୍କ ଉପରେ ହିନ୍ଦୁଙ୍କ ଆକ୍ରମଣ । କ୍ରମେ କ୍ରମେ ଏହା ଉତ୍ତରପ୍ରଦେଶ ଓ ଅନ୍ୟ ପ୍ରଦେଶକୁ ବ୍ୟାପିଲା ।

ଜିନ୍ନାଙ୍କର ହିସାବ ଥିଲା ଯେ କଲିକତାରେ ମୁସଲମାନଙ୍କ ଆକ୍ରମଣରେ ଭୟଭୀତ ହୋଇ ହିନ୍ଦୁମାନେ ବିହାରକୁ ପଳାଇଯିବେ, ସେପରି ବିହାରରୁ ମୁସଲମାନମାନେ କଲିକତା ପଳାଇ ଆସିବେ ଓ କଲିକତା ସହର ମୁସଲମାନ ସଂଖ୍ୟାଗରିଷ୍ଠ ହୋଇଯିବ । ଯେମିତି ହେଲେ କଲିକତା ସହରକୁ ବଂଗ ଓ ଆସାମ ପ୍ରଦେଶକୁ ପାକିସ୍ଥାନ ଅନ୍ତର୍ଭୁକ୍ତ କରାଯିବ ।

୧୯୪୬ ମସିହା ସେପ୍ଟେମ୍ବର ୧୬ତାରିଖରେ କଂଗ୍ରେସ କେନ୍ଦ୍ରରେ ମଧ୍ୟବର୍ତ୍ତୀ-କାଳୀନ ସରକାର ଗଠନକଲା । ପଣ୍ଡିତ ନେହୁରୁଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରିମଣ୍ଡଳର ସଭ୍ୟ ହେଲେ– ସର୍ଦ୍ଦାର ପଟେଲ, ରାଜେନ୍ଦ୍ରପ୍ରସାଦ, ରାଜଗୋପାଳାଚାରୀ, ଆସଫ ଅଲ୍ଲୀ, ଜନ୍ ମାଥାଇ, ସର୍ଦ୍ଦାର ବଳଦେବ ସିଂହ, ସାଫେତ୍ ଆହମଦ୍ ଖାଁ, ଜଗଜ୍ଜୀବନ ରାମ, ସୟଦ୍ ଅଲ୍ଲୀ ଜାହିର ଏବଂ ଏଚ୍.ଭି. ଭାବା ଓ ଶରତ ଚନ୍ଦ୍ର ବୋଷ ।

ୱାଭେଲ ସାହେବ ଭାବିଲେ ଯେ ମନ୍ତ୍ରିମଣ୍ଡଳରେ ଯୋଗଦେବାକୁ ଲିଗ୍‌କୁ ନିମନ୍ତ୍ରଣ କଲେ ଏ ବିବାଦର ଅବସାନ ଘଟିବ । ମନ୍ତ୍ରିମଣ୍ଡଳରେ ଯୋଗଦେବାକୁ ଜିନ୍ନା ସାହେବଙ୍କୁ ଆମନ୍ତ୍ରଣ କଲେ । ଜିନ୍ନାସାହେବ ହିସାବ କଲେ ଯେ ମନ୍ତ୍ରିମଣ୍ଡଳରେ ଯୋଗଦେଇ ସରକାରୀ କଳକୁ ଅଚଳ କରି ଆନ୍ଦୋଳନକୁ ଶକ୍ତିଶାଳୀ କରିହେବ । ସେ ରାଜି ହୋଇଗଲେ– ପାକିସ୍ଥାନ ଗଠନର ଭିତ୍ତିଭୂମି ଗଠିତହେଲା ।

ଅକ୍ଟୋବର ୨୫ତାରିଖରେ ଲିଗ୍ ମନ୍ତ୍ରୀମାନଙ୍କ ନାମ ଓ ବିଭାଗ ପ୍ରକାଶିତ ହେଲା । ମନ୍ତ୍ରୀମାନେ ହେଲେ– ଲିଆକତ୍ ଅଲ୍ଲୀ, ଆଇ.ଆଇ. ଚୁଂଦ୍ରଗାର, ଅବଦୁର ରାବ୍ ନିସ୍ତମର, ଗଜନଫର ଅଲ୍ଲୀ ଓ ଯୋଗେନ୍ଦ୍ରନାଥ ମଣ୍ଡଳୀ । ଜଣେ ହରିଜନ-ପ୍ରତିନିଧିଙ୍କୁ ବାଛି ଜିନ୍ନା ସାହେବ ଜଣାଇବାକୁ ଚାହିଁଲେ ହିନ୍ଦୁଙ୍କଠାରୁ ସେ ହରିଜନମାନଙ୍କ ସ୍ୱାର୍ଥପ୍ରତି ଅଧିକ ସଚେତନ । ଲିଗ୍ ମନ୍ତ୍ରୀମାନଙ୍କୁ ସ୍ଥାନ ଦେବା ନିମନ୍ତେ ଶରତଚନ୍ଦ୍ର ବୋଷ, ସାର୍ ସାଫେତ୍ ଆହମଦ ଖାଁ ଓ ସୟଦ୍ ଅଲ୍ଲୀ ଜାହିର ଇସ୍ତଫା ଦେଲେ । ବିଭାଗ-ବଂଟନ ନେଇ କଂଗ୍ରେସର ନିଷ୍ପତ୍ତି ଭୁଲ୍ ହେଲା । ଲିଗ୍ ସ୍ୱରାଷ୍ଟ୍ର-ବିଭାଗ ଚାହିଁଥିଲା, କିନ୍ତୁ ସର୍ଦ୍ଦାର ପଟେଲ ତାହା ଛାଡ଼ିବାକୁ ନାରାଜ । ତା ପରିବର୍ତ୍ତେ ଅର୍ଥବିଭାଗ ଲିଗ୍‌କୁ ଦିଆଗଲା । ଲିଆକତ୍ ଅଲ୍ଲୀ ତା'ର ଦାୟିତ୍ୱ ନେଲେ । ସରକାରୀ କଳକୁ ଅଚଳ କରିଦେବାର ଲିଗ୍-ଯୋଜନା ସଫଳ ହେଲା ।

ଲିଗ୍ ମନ୍ତ୍ରୀମାନେ ପ୍ରକାଶ୍ୟରେ କଂଗ୍ରେସ ମନ୍ତ୍ରୀଙ୍କୁ ସମାଲୋଚନା କଲେ । ପଣ୍ଡିତ ନେହୁରୁଙ୍କୁ ତାଚ୍ଛଲ୍ୟ କଲେ, ମନ୍ତ୍ରିମଣ୍ଡଳ-ବୈଠକରେ କଂଗ୍ରେସ ମନ୍ତ୍ରୀଙ୍କ ସହିତ ବସିଲେ ନାହିଁ । ଅର୍ଥବିଭାଗ ହେଉଛି କେନ୍ଦ୍ର, କଂଗ୍ରେସ ମନ୍ତ୍ରୀଙ୍କ ସବୁ ପ୍ରସ୍ତାବକୁ ଲିଆକତ୍ ଅଲ୍ଲୀ ନାକଚ କରିଦେଲେ । ସବୁଠୁ ବଡ଼ କଥା ହେଉଛି ଯେ ଲିଗ୍ ମନ୍ତ୍ରିମଣ୍ଡଳରେ ଯୋଗଦେଲା କିନ୍ତୁ ଆନ୍ଦୋଳନକୁ ଚାଲୁରଖିଲା ।

ସମଗ୍ର ଦେଶର ଶାସନରେ ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । ଆଲୋଚନା ନିମନ୍ତେ ଉଭୟ ଦଳର ନେତାଙ୍କୁ ଲଣ୍ଡନ ଯିବାକୁ ଆଟଲି ସାହେବ ଅନୁରୋଧ କଲେ ।

ତଦନୁଯାୟୀ କଂଗ୍ରେସ ପ୍ରତିନିଧିରୂପେ ପଣ୍ଡିତ ନେହୁରୁ, ଲିଗ୍ ତରଫରୁ ଜିନ୍ନାସାହେବ ଓ ଲିଆକତ୍ ଆଲ୍ଲି ଖାଁ ଓ ଶିଖ୍ ସଂପ୍ରଦାୟ ତରଫରୁ ବଳଦେବସିଂହ ବିଲାତ ଗଲେ । କିନ୍ତୁ କୌଣସି ସମାଧାନର ପନ୍ଥା ନିର୍ଦ୍ଧାରିତ ହୋଇପାରିଲା ନାହିଁ ।

ମନ୍ତ୍ରିମଣ୍ଡଳ ଅଚଳ ହୋଇପଡ଼ିଛି, ଶାସନବିଧାୟକ ସଭାରେ ଯୋଗ ଦେବାକୁ ଲିଗ୍ ଅରାଜି, ଦେଶସାରା ହିଂସାର ତାଣ୍ଡବଲୀଳା— ପରବର୍ତ୍ତୀ ପନ୍ଥା କଣ ହେବ— ଏ ବିଷୟରେ ପ୍ରଧାନମନ୍ତ୍ରୀ ଆଟଲି ସାହେବଙ୍କ ସହିତ ବଡ଼ଲାଟ ଓ୍ୟାଭେଲସାହେବଙ୍କର ମତଭେଦ ହେଲା । ବ୍ରିଟିଶ ସରକାରଙ୍କ ଭାରତଛାଡ଼ିବାର ତାରିଖ ନିର୍ଦ୍ଦିଷ୍ଟ ହୋଇ ଘୋଷଣା କରାଯାଉ ବୋଲି ଆଟ୍‌ଲି ସାହେବଙ୍କ ମତ— ସାଂପ୍ରଦାୟିକ ସମସ୍ୟାର ସମାଧାନ ନହେବା ପର୍ଯ୍ୟନ୍ତ ଭାରତ ଛାଡ଼ି ଯିବା ଉଚିତ୍ ହେବନାହିଁ ବୋଲି ବଡ଼ଲାଟଙ୍କ ମତ ।

ଶେଷରେ ଜୁନମାସରେ ବ୍ରିଟିଶ ସରକାରଙ୍କ ଘୋଷଣାପତ୍ର ପ୍ରକାଶ ପାଇଲା । ସେଥିରେ କୁହାଯାଇଥିଲା ଯେ ୧୯୪୮ ମସିହା ଜୁନମାସ ସୁଦ୍ଧା ବ୍ରିଟିଶ ସରକାର ଭାରତ ଛାଡ଼ିବେ ବୋଲି ୧୯୪୭ ମସିହା ଫେବୃଆରୀ ମାସରେ ଘୋଷଣା କରାଯାଇଥିଲା । ଆଶା କରାଯାଇଥିଲା ଯେ ଭାରତର ରାଜନୀତିକ ଦଳଗୁଡ଼ିକ

କ୍ୟାବିନେଟ୍ ମିଶନ୍ ଯୋଜନାକୁ କାର୍ଯ୍ୟକାରୀ କରି ନୂତନ ସଂବିଧାନ ଗଠନକରିବେ । ଶାସନ ବିଧାୟକ ସଭାରେ ଯୋଗ ଦେବାକୁ କଂଗ୍ରେସ ରାଜି ହୋଇଥିଲେ ମଧ୍ୟ ମୁସଲିମ୍ ଲିଗ୍ ରାଜି ହେଲାନାହିଁ । ଭାରତୀୟଙ୍କ ଇଚ୍ଛା ଅନୁଯାୟୀ କ୍ଷମତା-ହସ୍ତାନ୍ତର କରିବାକୁ ବ୍ରିଟିଶ ସରକାରଙ୍କ ଇଚ୍ଛା । କିନ୍ତୁ ଦେଶରେ ଦୁର୍ନୀତି ପ୍ରକାଶ ପାଉଛି । ଏପରି ଅବସ୍ଥାରେ ଭାରତ-ବିଭାଜନ ଛଡ଼ା ଅନ୍ୟ ଉପାୟ ନାହିଁ । ବିଭାଜନ ବିଷୟରେ ପଞ୍ଜାବ ଓ ବଙ୍ଗଳାର ବିଧାନସଭା ସଭ୍ୟଗଣ ନିଷ୍ପତ୍ତି ଗ୍ରହଣ କରିବେ ।

ଓ୍ୟାଭେଲସାହେବ ଇସ୍ତଫା ଦେଲେ, ତାଙ୍କ ସ୍ଥାନରେ ଲର୍ଡ଼ ମାଉଣ୍ଟବାଟେନ ଆସିଲେ ।

## (୫୭)

## ଲର୍ଡ଼ ମାଉଣ୍ଟବାଟେନ ଓ ଦେଶ ବିଭାଜନ

୧୯୪୭ ମସିହା ମାର୍ଚ୍ଚ ୨୨ତାରିଖରେ ଭାରତରେ ପହଁଚି ୨୪ ତାରିଖରେ ବଡ଼ଲାଟରୂପେ ଲର୍ଡ଼ ମାଉଣ୍ଟବାଟେନ୍ ଶପଥ ନେଲେ । ସେ ଜଣେ ସୈନିକ– ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମିତ୍ରପକ୍ଷ ତରଫରୁ ଦକ୍ଷିଣ-ପୂର୍ବ ଏସିଆରେ ଅବସ୍ଥାପିତ ସେନାବାହିନୀର ସେ ମୁଖ୍ୟ ଥିଲେ । ଭାରତ ବିଭାଜନ ସେ ଚାହିଁନଥିଲେ, କିନ୍ତୁ ଯେକୌଣସିମତେ ତିନିମାସ ଭିତରେ ସାଂପ୍ରଦାୟିକ-ସମସ୍ୟାର ସମାଧାନ କରିବାକୁ ମନସ୍ଥ କରିଥିଲେ । ସେଥିପାଇଁ ୪ଜଣଙ୍କ ସହିତ ସେ ଆଲୋଚନା କରିଥିଲେ । ସେମାନେ ହେଲେ– ମହାତ୍ମାଗାନ୍ଧୀ, ଜିନ୍ନାସାହେବ, ପଣ୍ଡିତ ନେହୁରୁ ଓ ସର୍ଦ୍ଦାର୍ ବଲ୍ଲଭଭାଇ ପଟେଲ ।

ଜିନ୍ନାସାହେବଙ୍କର କୌଣସି ବନ୍ଧୁ ନଥିଲେ, ଥିଲେ ଅନୁଗାମୀ । ଜନତାସହିତ ତାଙ୍କର କୌଣସି ସଂପର୍କ ନଥିଲା । ନିଜର ଧର୍ମ ଓ ଭାଷା ସହିତ ତାଙ୍କର ସଂପର୍କ ଅତି କ୍ଷୀଣ ଥିଲା । ତଥାପି ପରିସ୍ଥିତି ତାଙ୍କୁ ମୁସଲିମ୍ ଲିଗର ଡିକ୍ଟେଟର କରିଦେଇଥିଲା । ସେ ତାଙ୍କର ଦାବି– ସ୍ୱତନ୍ତ୍ରରାଷ୍ଟ୍ର ପାକିସ୍ଥାନ ଗଠନରେ ଅଟଳ । ସେ ଥିଲେ ଚତୁର, ବିଚକ୍ଷଣ ବାରିଷ୍ଟର । ସାଂପ୍ରଦାୟିକ ବିବାଦ ଓ ସଂପତ୍ତି ନେଇ ଭାଇଭାଇ ଭିତରେ ବିବାଦ । ଥରେ ଭାଗବଣ୍ଟରା ହୋଇଗଲେ, ସେ ବିବାଦର ଅବସାନ ସବୁଦିନ ପାଇଁ ହୋଇଯିବ ବୋଲି ବଡ଼ଲାଟଙ୍କୁ ସେ ବୁଝାଇଲେ । ମହାତ୍ମାଗାନ୍ଧୀ ଦେଶର ତୁଙ୍ଗ ଜନନାୟକ, ଅହିଂସାର ପୂଜାରୀ, ଦେଶର ଅଖଣ୍ଡତା ଓ ସାଂପ୍ରଦାୟିକ ଏକତା ପାଇଁ ଜୀବନବ୍ୟାପୀ ସଂଗ୍ରାମ କରି ଆସିଛନ୍ତି, ସେ ବିଭାଜନ ପାଇଁ କିପରି ରାଜିହେବେ ?

ବଡ଼ଲାଟ ପଚାରିଲେ 'ସମାଧାନର ପନ୍ଥା କ'ଣ ?' ଗାନ୍ଧିଜୀ କହିଲେ, ''ଦେଶର ଶାସନଭାର ଜିନ୍ନା ସାହେବଙ୍କୁ ଦେଇଦିଅନ୍ତୁ, ତାଙ୍କୁ ନିମନ୍ତ୍ରଣ କରନ୍ତୁ ସରକାର ଗଠନ କରିବାକୁ ।'' ପ୍ରଶ୍ନ– 'କଂଗ୍ରେସ କ'ଣ ରାଜି ହେବ ?' ଉତ୍ତର– 'ମୁଁ କଂଗ୍ରେସକୁ ରାଜିକରାଇବି ।'

ପଣ୍ଡିତ ନେହୁରୁ ବଡ଼ଲାଟଙ୍କର ପୂର୍ବ ପରିଚିତ । ୧୯୪୪ ମସିହାରେ ସେ ଭାରତ ଆସିଥିଲା ବେଳେ ପଣ୍ଡିତ ନେହୁରୁ ଆହମେଦାବାଦ ଫୋର୍ଟରେ ଅଟକବନ୍ଦୀ । ନେହୁରୁଙ୍କ ସହିତ ସାକ୍ଷାତପାଇଁ ତାଙ୍କର ଅନୁରୋଧକୁ ସରକାର ଅଗ୍ରାହ୍ୟ କରିଥିଲେ । ସେ ଓ ସର୍ଦ୍ଦାର ପଟେଲ ଗାନ୍ଧିଜୀଙ୍କ ପ୍ରସ୍ତାବରେ ରାଜିହେଲେନାହିଁ ।

ଏପରି ପରିସ୍ଥିତିରେ ଦେଶ-ବିଭାଜନ ଛଡ଼ା ଅନ୍ୟ ଉପାୟ ନାହିଁ ବୋଲି ବଡ଼ଲାଟ ନିଷ୍ପତ୍ତି ନେଲେ ।

ପ୍ରଥମେ ରାଜିହେଲେ ସର୍ଦ୍ଦାର ପଟେଲ । ମଧ୍ୟବର୍ତ୍ତୀକାଳୀନ ସରକାରର କାର୍ଯ୍ୟକଳାପର ତିକ୍ତ ଅନୁଭୂତି ରହିଥିଲା । ଅର୍ଥମନ୍ତ୍ରୀ ଲିଆକତ୍ ଆଲ୍ଲି ଖାଁଙ୍କ ସମ୍ମତି ବିନା ଜଣେ ଚପରାସୀ ନିଯୁକ୍ତ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ଏପରି ପରିସ୍ଥିତି ତାଙ୍କର ସହ୍ୟ ହେଲାନାହିଁ । ହେଉ ପାକିସ୍ଥାନ ଗଠନ– ଆର୍ଥନୀତିକ ଦୃଷ୍ଟିକୋଣରୁ ତାହା ସଂବଳହୀନ ହୋଇ ରହିବ ଏବଂ ପୁଣି ଭାରତରେ ମିଶିବାକୁ ବାଧ୍ୟ ହେବ ବୋଲି ତାଙ୍କର ବିଶ୍ୱାସ ଥିଲା ।

ପ୍ରଥମେ ରାଜି ନଥିଲେ ପଣ୍ଡିତ ନେହୁରୁ । ଶେଷକୁ ବଡ଼ଲାଟ ଓ ତାଙ୍କ ସହଧର୍ମିଣୀଙ୍କ ଅନ୍ୟ ଉପାୟନାହିଁ ବୋଲି ଯୁକ୍ତିକୁ ସେ ଗ୍ରହଣକରିନେଲେ ।

ମୋର ଶବ ଉପରେ ପାକିସ୍ଥାନ ଗଠନ ହେବ ବୋଲି ମହାତ୍ମା ଗାନ୍ଧୀ କହିଥିଲେ– କିନ୍ତୁ ସର୍ଦ୍ଦାର ପଟେଲଙ୍କ ପ୍ରରୋଚନାରେ ଶେଷରେ ସେ ମଧ୍ୟ ରାଜିହୋଇଗଲେ । 'ଆମେ ଚାହୁଁନାହୁଁ, କିନ୍ତୁ ଅନ୍ୟ ଉପାୟ ନାହିଁ'– ଏହା ହେଲା ଯୁକ୍ତି ।

କ୍ୟାବିନେଟ୍-ମିଶନ୍ ଯୋଜନାରେ ଆସାମକୁ ବଂଗ ସହିତ ଗ୍ରୁପ୍‌ରେ ରଖାଯାଇଥିଲା । ଏଥିରେ ଆସାମ ନେତୃବୃନ୍ଦ ରାଜିହେଲେନାହିଁ । ଆମକୁ ଜୋର-ଜବରଦସ୍ତି କୌଣସି ଗ୍ରୁପ୍‌ରେ ରଖାଯାଇପାରିବ ନାହିଁ, ତାହା ଆମର ନିଷ୍ପତ୍ତିଉପରେ ନିର୍ଭର କରେ– ଏହା ହେଲା ଯୁକ୍ତି । ବଙ୍ଗ ଓ ପଞ୍ଜାବପ୍ରଦେଶ ପାକିସ୍ଥାନରେ ରହିବ ବୋଲି ଜିନ୍ନାସାହେବଙ୍କ ଦାବିକୁ ବଡ଼ଲାଟ ଗ୍ରହଣ କଲେନାହିଁ । ବଂଗ ଓ ପଞ୍ଜାବ ବିଧାନସଭ୍ୟଙ୍କ ଭୋଟ ଗ୍ରହଣ କରାଗଲା ଓ ସେ ଦୁଇପ୍ରଦେଶ ବିଭକ୍ତ ହେଲା । ପୂର୍ବପଞ୍ଜାବ ଭାରତରେ ଓ ପୂର୍ବବଂଗ ପାକିସ୍ଥାନରେ ମିଶିଲା ।

କଂଗ୍ରେସର କାର୍ଯ୍ୟକାରୀ କମିଟିରେ ବିଭାଜନ-ପ୍ରସ୍ତାବ ଗୃହୀତ ହେଲା । ଏ ନିଷ୍ପତ୍ତି ଅତି ଦୁଃଖଦାୟକ ବୋଲି କଂଗ୍ରେସ ସଭାପତି ଆଚାର୍ଯ୍ୟ କୃପାଳିନୀ କହିଲେ ।

୧୯୪୭ ମସିହା ଅଗଷ୍ଟ ୧୪ ତାରିଖରେ ସ୍ୱାଧୀନ ପାକିସ୍ଥାନ ରାଷ୍ଟ୍ର ଓ ୧୫ ତାରିଖ ମଧ୍ୟଭାଗରେ ସ୍ୱାଧୀନ ଭାରତ ରାଷ୍ଟ୍ର ଘୋଷିତହେଲା । ଜିନ୍ନାସାହେବ ପାକିସ୍ଥାନର, ଲର୍ଡ଼ ମାଉଣ୍ଟବାଟେନ ଭାରତର ବଡ଼ଲାଟରୂପେ ନିଯୁକ୍ତ ହେଲେ ।

(୫୮)

## ଉପସଂହାର

ଅଖଣ୍ଡ ଭାରତର ସ୍ୱାଧୀନତାପାଇଁ ହିନ୍ଦୁ-ମୁସଲମାନ-ଶିଖ ଭାଇମାନେ କାନ୍ଧରେ କାନ୍ଧ ଓ ହାତରେ ହାତ ମିଳାଇ ସମସ୍ୱରରେ 'ଇନ୍‌କିଲାବ୍ ଜିନ୍ଦାବାଦ୍' ଧ୍ୱନି ଦେଇ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଅସୀମ ତ୍ୟାଗର ଶିକାର ହୋଇଥିଲେ । ସେହପରି ସେମାନେ ଆଜାଦ୍‌ହିନ୍ଦ୍ ଫୌଜରେ ଯୋଗଦେଇ 'ଦିଲ୍ଲୀଚଲୋ' ଧ୍ୱନି ଦେଇ ବଡ଼ଲାଟଭବନ ଓ ଲାଲକିଲ୍ଲାରେ ଜାତୀୟ ପତାକା ଉତ୍ତୋଳନ କରିବା ଅଭିପ୍ରାୟରେ କ୍ଷୁଧା, ତୃଷା ଓ ମୃତ୍ୟୁ ବରଣ କରିବାକୁ ପଛଘୁଞ୍ଚା ଦେଇନଥିଲେ । କଣ ହେଲା ହଠାତ୍– ଏ ପଟ୍ଟ ପରିବର୍ତ୍ତନର କାରଣ କ'ଣ ?

ଅଗଷ୍ଟ ୧୪ତାରିଖ ରାତିରେ ପାକିସ୍ଥାନରେ ଆନନ୍ଦର କୋଳାହଳ, ଭାରତରେ ବିଷାଦର ଘନଘୋର ଛାୟା । ନେତୃବୃନ୍ଦର ନିଷ୍ପତ୍ତିକୁ ଦେଶବାସୀ ଗ୍ରହଣ କରି ପାରିଲେ ନାହିଁ । ଜିନ୍ନାସାହେବ ବିଦାୟ ନେବା ସମୟରେ ଭାରତରେ ରହିଯାଉଥିବା ସାଢ଼େ ଚାରିକୋଟି ମୁସଲମାନଙ୍କୁ ଭାରତ ସରକାରଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବାକୁ ଉପଦେଶ ଦେଇଗଲେ । ୨୪ ଘଣ୍ଟା ମଧ୍ୟରେ ଆରମ୍ଭ ହୋଇଗଲା ଗୃହଯୁଦ୍ଧ । ଉଭୟ ପାକିସ୍ଥାନ ଓ ଭାରତରେ ରକ୍ତର ସୁଅ ବୋହିଗଲା । ହିନ୍ଦୁ-ମୁସଲମାନ ଆକ୍ରମଣ ଓ ପ୍ରତିଆକ୍ରମଣରେ ଜନତାର ସୁଅ ଛୁଟିଲା ପାକିସ୍ଥାନରୁ ଭାରତକୁ ଓ ଭାରତରୁ ପାକିସ୍ଥାନକୁ । ଏହି ସଂଘର୍ଷରେ ଅନ୍ୟୂନ୍ୟ ୨୦ଲକ୍ଷ ଲୋକ ପ୍ରାଣ ହରାଇଲେ । ଦିଲ୍ଲୀକୁ ମଧ ଏହା ବ୍ୟାପିଗଲା । ସଂଖ୍ୟାଲଘୁ ମୁସଲମାନ ସଂପ୍ରଦାୟ ଉପରେ ସଂଖ୍ୟାଗରିଷ୍ଠ ହିନ୍ଦୁ ସଂପ୍ରଦାୟର ଆକ୍ରମଣକୁ ଗାନ୍ଧିଜୀ ସହିପାରିଲେ ନାହିଁ । ଏକତା ପ୍ରତିଷ୍ଠା ପାଇଁ ଅନଶନ କଲେ । ମୁସଲମାନଙ୍କୁ ସମର୍ଥନ କରୁଛନ୍ତି ବୋଲି ଉଗ୍ର ହିନ୍ଦୁ ଆତତାୟୀର ଗୁଳିରେ ଶେଷରେ ତାଙ୍କର ପ୍ରାଣଗଲା ।

କେତେଗୁଡ଼ିଏ ପ୍ରଶ୍ନ ଉଠୁଛି । ପାକିସ୍ଥାନ ଗଠନବେଳକୁ ଜିନ୍ନାସାହେବ ଯକ୍ଷ୍ମାରୋଗରେ ଗୁରୁତର ପୀଡ଼ିତ ଓ ଆଉ ଅଳ୍ପଦିନ ତାଙ୍କର ଆୟୁ, ଏକଥା ସେତେବେଳେ ଜଣାପଡ଼ିଥିଲେ କ'ଣ କଂଗ୍ରେସ ବିଭାଜନକୁ ଗ୍ରହଣ କରିନେଇଥାନ୍ତା ? ବିଭାଜନ

ସଙ୍ଗେ ସଙ୍ଗେ ଉଭୟସଂପ୍ରଦାୟ ପକ୍ଷରୁ ଯେଉଁ ହିଂସାର ତାଣ୍ଡବଲୀଳା ଚାଲିଲା, ଯାହାର ପରିଣତି ହେଲା ଜାତିର ଜନକଙ୍କ ହତ୍ୟା– ତା' ଚିନ୍ତାରେ ଥିଲେ କ'ଣ ଭାରତ ବିଭାଜନ ହୋଇଥାନ୍ତା ? ଭାରତର ବିଭାଜନ ସାଂପ୍ରଦାୟିକ ସମସ୍ୟାର ଏକମାତ୍ର ସମାଧାନର ପନ୍ଥା ବୋଲି ଆଶା କ'ଣ ସଫଳ ହେଲା ନା ତାହା ସାଂପ୍ରଦାୟିକ ବିଭେଦକୁ ତୀବ୍ରତର କଲା ?

ଦେଶ ବିଭାଜନକୁ ଏକ ଦୁର୍ବଳ ନେତୃତ୍ୱ ଗ୍ରହଣକରିନେଲା ଆଉ ତା'ର ଫଳ ଭୋଗିଲେ ଦେଶବାସୀ ଯେ କି ସେ ନେତୃତ୍ୱ ଉପରେ ଆସ୍ଥା ରଖିଥିଲେ । ଦେଶ ବିଭାଜନ କଂଗ୍ରେସର ଚରମ ପରାଜୟ ।

—

# ସ୍ୱାଧୀନତା ସଂଗ୍ରାମରେ ସହିଦ ହୋଇଥିବା ବୀରମାନଙ୍କ ନାମ

ଓଡ଼ିଶା ସରକାରଙ୍କ ସ୍ୱାଧୀନତା-ସଂଗ୍ରାମର ପେନସନ୍ କମିଟିର ଚେୟାରମ୍ୟାନ୍ ଭୂତପୂର୍ବ ପାର୍ଲିଆମେଣ୍ଟ ସଦସ୍ୟ ଓ ସ୍ୱାଧୀନତା ସଂଗ୍ରାମୀ ଭବାନୀଚରଣ ପଟ୍ଟନାୟକଙ୍କ ସୌଜନ୍ୟରୁ ପ୍ରାପ୍ତ ।

୧. ଜୟୀ ରାଜଗୁରୁ, ପୁରୀ
୨. ରଘୁନାଥ ମହାନ୍ତି, ନୟାଗଡ଼
୩. ଅର୍ଜୁନ ରାଉତ, ନୟାଗଡ଼
୪. ଦିବାକର ପରିଡ଼ା, ନୟାଗଡ଼
୫. କବି ଡାକୁଆ, ନୟାଗଡ଼
୬. କଣ୍ଡୁରୀ ପରିଡ଼ା,ନୟାଗଡ଼
୭. ସଦାଶିବ ଷଡ଼ଙ୍ଗୀ,ନୟାଗଡ଼
୮. ଲକ୍ଷ୍ମଣ ନାଏକ, କୋରାପୁଟ
୯. ଉତ୍ସବ ମଲ୍ଲିକ, ନିମାପଡ଼ା, ପୁରୀ
୧୦. ରାଧାମୋହନ ଦାସ, ଜି. ଉଦୟଗିରି, ଫୁଲବାଣୀ
୧୧. ନରସିଂହ ସାହୁ, ଫୁଲବାଣୀ
୧୨. ଦ୍ୟୁତିକୃଷ୍ଣ ଚଉଧୁରୀ, ଜି.ଉଦୟଗିରି, ଫୁଲବାଣୀ
୧୩. ନିଧି ମଲ୍ଲିକ, ଭଦ୍ରକ
୧୪. ଶ୍ୟାମ ମହାଲିକ, ଭଦ୍ରକ
୧୫. ଗୌରୀ ଜେନା, ଭଦ୍ରକ
୧୬. ଶଙ୍କର ବେହେରା, ଭଦ୍ରକ
୧୭. ନବକୁମାର ନାୟକ, ଭଦ୍ରକ
୧୮. କୃଷ୍ଣ ମହାଲିକ, ଭଦ୍ରକ
୧୯. ଗୋପୀନାଥ ଜେନା, ଭଦ୍ରକ
୨୦. ଅଗଣି ସାହୁ, ଭଦ୍ରକ
୨୧. ଚିନ୍ତାମଣି ଦାସ, ଭଦ୍ରକ
୨୨. ବିଶ୍ୱନାଥ ଦାସ, ଭଦ୍ରକ
୨୩. ଗୋପାଳ ଚରଣ ଦାସ, ଭଦ୍ରକ

୨୪. ବିଜୁଳି ଦାସ, ଭଦ୍ରକ
୨୫. ମଧୁ ମହାଲିକ, ଭଦ୍ରକ
୨୬. ମଣି ବେହେରା, ଭଦ୍ରକ
୨୭. ଧ୍ରୁବଚରଣ ଦେ, ଭଦ୍ରକ
୨୮. ବଲ୍ଲଭ ବେହେରା, ଭଦ୍ରକ
୨୯. ହୃଷୀକେଶ ବେହେରା, ଭଦ୍ରକ
୩୦. ବାସୁଦେବ ସାହୁ, ଭଦ୍ରକ
୩୧. ରାମଚନ୍ଦ୍ର ମାଝି, ଭଦ୍ରକ
୩୨. କାଳି ମାଝି, ଭଦ୍ରକ
୩୩. ଭୁଆ ମାଝି, ଭଦ୍ରକ
୩୪. କୃଷ୍ଣ ସ୍ୱାଇଁ, ଭଦ୍ରକ
୩୫. ମଦନ ପଲାଇ, ଭଦ୍ରକ
୩୬. ହରି ବେହେରା, ଭଦ୍ରକ
୩୭. ମାଗ ମହାଲିକ, ଭଦ୍ରକ
୩୮. କୃପାସିନ୍ଧୁ ବେହେରା, ଭଦ୍ରକ
୩୯. ମନି ପ୍ରଧାନ, ଭଦ୍ରକ
୪୦. ପାରି ଦାସ, ଭଦ୍ରକ
୪୧. ରତ୍ନାକର ପାଣି, ଭଦ୍ରକ
୪୨. ଗୋବିନ୍ଦ ରାଉତ, ଭଦ୍ରକ
୪୩. ଦିବାକର ପାଣିଗ୍ରାହୀ, ଭଦ୍ରକ
୪୪. ପାରି ବେଓ୍ୟା, ଭଦ୍ରକ
୪୫. ଉପ ମଲ୍ଲିକ, ଭଦ୍ରକ
୪୬. ବୃନ୍ଦାବନ ପଣ୍ଡା, ଭଦ୍ରକ
୪୭. ନିଧି ମହାଲିକ, ଭଦ୍ରକ
୪୮. ଶଙ୍କର ମଲ୍ଲିକ, ଭଦ୍ରକ
୪୯. ଭବନ ରାଉତ, ଭଦ୍ରକ
୫୦. ଜଟି ସାହୁ, ଭଦ୍ରକ
୫୧. ରଘୁନାଥ ରଂଧାରୀ, ନବରଙ୍ଗପୁର
୫୨. ବୁଦ୍ଧୁ ଅମାନାତ୍ୟ, ନବରଙ୍ଗପୁର
୫୩. ବାଲି ସଉରା, ନବରଙ୍ଗପୁର

୫୪. ରାମଚନ୍ଦ୍ର ଅମାନାତ୍ୟ, ନବରଙ୍ଗପୁର
୫୫. ଦୀନବନ୍ଧୁ ଜାନି, ନବରଙ୍ଗପୁର
୫୬. ଘାସି ଜାନି, ନବରଙ୍ଗପୁର
୫୭. ଶ୍ୟାମସୁନ୍ଦର ରାଉତ, ନବରଙ୍ଗପୁର
୫୮. ସଦା ଭାତରା, ନବରଙ୍ଗପୁର
୫୯. ମଙ୍ଗଲୁ ଭାତରା, ନବରଙ୍ଗପୁର
୬୦. ଜଗନ୍ନାଥ ଅମାନାତ୍ୟ, ନବରଙ୍ଗପୁର
୬୧. ରତନ ପୂଜାରୀ, ନବରଙ୍ଗପୁର
୬୨. ସୁକୁରୁ ମୁଦୁଲି, ନବରଙ୍ଗପୁର
୬୩. ସଦାଶିବ ରଣା, ନବରଙ୍ଗପୁର
୬୪. ଆନନ୍ଦ ଗୌଡ଼, ନବରଙ୍ଗପୁର
୬୫. ଖଗପତି ଅମାନାତ୍ୟ, ନବରଙ୍ଗପୁର
୬୬. ପରମାନନ୍ଦ ସାବର, ନବରଙ୍ଗପୁର
୬୭. ବିକ୍ରମ ଭାତରା, ନବରଙ୍ଗପୁର
୬୮. ଭଗବାନ ପୂଜାରୀ, ନବରଙ୍ଗପୁର
୬୯. ସହଦେବ ପୂଜାରୀ, ନବରଙ୍ଗପୁର
୭୦. ଲାବଣ୍ୟ ଭାତରା, ନବରଙ୍ଗପୁର
୭୧. ରତନ ଭାତରା, ନବରଙ୍ଗପୁର
୭୨. ଘାଷିଆ ଗଂଡ଼ା, ନବରଙ୍ଗପୁର
୭୩. ଭାଗ ପୂଜାରୀ, ନବରଙ୍ଗପୁର
୭୪. ପର୍ଶୁରାମ ମାଳି, ନବରଙ୍ଗପୁର
୭୫. ଚେରୁ ପାଇକ, ନବରଙ୍ଗପୁର
୭୬. ଗଙ୍ଗାଧର ମୁଦୁଲି, ନବରଙ୍ଗପୁର
୭୭. ବନମାଳି ହରିଜନ, ନବରଙ୍ଗପୁର
୭୮. ବଂଦକ ଭାତରା, ନବରଙ୍ଗପୁର
୭୯. ଖଗେଶ୍ୱର ମାଝି, ନବରଙ୍ଗପୁର
୮୦. ମଙ୍ଗଲୁ ଭାତ୍ରା, ନବରଙ୍ଗପୁର
୮୧. ହରି ଅମାନାତ୍ୟ, ନବରଙ୍ଗପୁର
୮୨. ଅଚ୍ୟୁତ ଭାତରା, ନବରଙ୍ଗପୁର
୮୩. ସୁକମନ ଭାତରା, ନବରଙ୍ଗପୁର

୮୪. ଧବଲୁ ପାଇକ, ନବରଙ୍ଗପୁର
୮୫. ଧନି କଲାର, ନବରଙ୍ଗପୁର
୮୬. ସମରଦିଶି ନାଏକ, ନବରଙ୍ଗପୁର
୮୭. ସୁନାଧର ଭାତରା, ନବରଙ୍ଗପୁର
୮୮. ଗୁରୁ ପଟିଆ, ନବରଙ୍ଗପୁର
୮୯. ଜଳନ୍ଧର ଭାତରା, ନବରଙ୍ଗପୁର
୯୦. ବାସୁଦେବ ସାହୁ, ଅନୁଗୁଳ
୯୧. କୃତାର୍ଥ ପ୍ରଧାନ, ଅନୁଗୁଳ
୯୨. ଭଗବାନ ସାହୁ, ଅନୁଗୁଳ
୯୩. ଭଜନ ସାହୁ, ଅନୁଗୁଳ
୯୪. ମହେଶ୍ୱର ପ୍ରଧାନ, ଅନୁଗୁଳ
୯୫. ପଦିଆ ବେହେରା, ଅନୁଗୁଳ(ଆଠମଲ୍ଲିକ)
୯୬. ରବି ଚରଣ ପ୍ରଧାନ, ଅନୁଗୁଳ(ଆଠମଲ୍ଲିକ)
୯୭. ବାଙ୍କି ସେଠି, ଅନୁଗୁଳ(ଆଠମଲ୍ଲିକ)
୯୮. ଗଣେଶ୍ୱର ପ୍ରଧାନ, ଅନୁଗୁଳ(ଆଠମଲ୍ଲିକ)
୯୯. ବୁଧିଆ ବେହେରା, ଅନୁଗୁଳ(ଆଠମଲ୍ଲିକ)
୧୦୦. ବିକା ନାଏକ, ଅନୁଗୁଳ(ଆଠମଲ୍ଲିକ)
୧୦୧. ଅଇଁଠୁ ପତ୍ରି, ଅନୁଗୁଳ(ଆଠମଲ୍ଲିକ)
୧୦୨. ରେଖାଦେଇ, ଅନୁଗୁଳ(ଆଠମଲ୍ଲିକ)

—

# ସଂକ୍ଷିପ୍ତ ଜୀବନପଞ୍ଜି

| | | |
|---|---|---|
| ଜନ୍ମ | – | ୩୦.୧୧.୧୯୨୦, ସ୍ଥାନ – କୁଣ୍ଢାଇବେଣ୍ଟ ସାହି, ପୁରୀ । ପିତା – ଗୋପୀନାଥ ମିଶ୍ର ଓ ମାତା ମୁକ୍ତାବାଳା ଦେବୀ । |
| ଶିକ୍ଷା | – | ପୁରୀ ଜିଲ୍ଲାସ୍କୁଲ, ରେଭେନ୍‌ସା କଲେଜ ଓ ପାଟନା ଆଇନ୍ କଲେଜ । |
| ୧୯୩୭ | – | ଓଡ଼ିଶା ଛାତ୍ର ସଂଘର ପ୍ରତିଷ୍ଠାତା ସଭ୍ୟ । |
| ୧୯୩୯ | – | କଟକ ମେଡ଼ିକାଲ ସ୍କୁଲ ଧର୍ମଘଟରେ କାରାବରଣ । |
| ୧୯୪୦, ଜାନୁଆରୀ ୨୬ | – | ସ୍ୱାଧୀନତା ଦିବସରେ ରେଭେନ୍ସା କଲେଜରେ ଜାତୀୟ ପତାକା ଉତ୍ତୋଳନ କରି କଲେଜରୁ ବହିଷ୍କୃତ ଓ କାରାବରଣ । |
| ୧୯୪୨ | – | 'ଭାରତଛାଡ଼' ଆନ୍ଦୋଳନରେ ଯୋଗଦାନ ଓ କାରାବରଣ । |
| ୧୯୪୬ | – | ଆଜାଦ ହିନ୍ଦ୍ ଫୌଜର ଥଇଥାନ କମିଟି ସଂପାଦକ ଓ ଦୈନିକ ସମାଜର ସହସଂପାଦକ । |
| ୧୯୪୯ | – | ଓକିଲାତି ଜୀବନ ଆରମ୍ଭ । |
| ୧୯୫୩ | – | ଅଧ୍ୟାପିକା ଉମା ରାୟଙ୍କ ସହିତ ବିବାହ । |
| ୧୯୫୪ | – | ସୀମାଆନ୍ଦୋଳନରେ ଯୋଗଦାନ, ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ ଓ ଏକାଡେମିକ୍ କାଉନ୍‌ସିଲ୍‌ର ସଭ୍ୟ (୧୯୬୩ ଯାଏଁ) । |
| ୧୯୫୮ | – | ଉପସଭାପତି, ଟ୍ରେଡ୍ ୟୁନିୟନ୍ କଂଗ୍ରେସ୍ (ଓଡ଼ିଶା ଶାଖା), ରାଜ୍ୟସଭାର ସଦସ୍ୟ । |
| ୧୯୬୨-୬୭ | – | ଲୋକସଭା ସଦସ୍ୟ, କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଆଇନ୍ ଓ ଶିକ୍ଷା ବିଭାଗର ମନ୍ତ୍ରୀ । ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀରେ ଭାରତ ସରକାରଙ୍କ ପ୍ରତିନିଧିତ୍ୱ । |
| ୧୯୬୮ | – | ବାଙ୍ଗାଲୋରସ୍ଥିତ ଭାରତ ସରକାରଙ୍କ ଟେଲିଫୋନ୍ କଂପାନିର ଚେୟାରମ୍ୟାନ୍ । |
| ୧୯୭୬ | – | ଦୈନିକ 'ମାତୃଭୂମି'ର ସଂପାଦକ ଦାୟିତ୍ୱ ବହନ । |
| ୧୯୮୦ | – | ଦୈନିକ 'ଦିନଲିପି'ର ସଂପାଦକ ଦାୟିତ୍ୱ ବହନ । |

| | | |
|---|---|---|
| ୧୯୮୭ | – | ଭିଏନାରେ ଅନୁଷ୍ଠିତ 'ବିଶ୍ୱଶାନ୍ତି ସମ୍ମିଳନୀ'ରେ ଭାରତୀୟ ପ୍ରତିନିଧି ଦଳର ସଭ୍ୟ – ଆମେରିକା ଭ୍ରମଣ । |
| ଆଡ୍‌ଭୋକେଟ୍ ରୂପେ କେତେକ ବିଶିଷ୍ଟ କେସ୍‌ର ପରିଚାଳନା | – | ରାଜନୀତିରେ ଯୋଗଦାନ ସତ୍ତ୍ୱେ ସେ ପେଷାରେ ମୁଖ୍ୟତଃ ଜଣେ ଆଡ୍‌ଭୋକେଟ୍ । ଏହି କାର୍ଯ୍ୟ ସଂପାଦନରେ ତାଙ୍କର ଆନ୍ତରିକତା ଓ ପଦକ୍ଷେପ ଦୃଢ଼ । ଓକିଲାତିର ବିଭିନ୍ନ ବିଭାଗରେ କେସ୍ ପରିଚାଳନା ସତ୍ତ୍ୱେ କେତେକ ରାଜନୈତିକ ସମସ୍ୟାଜଡ଼ିତ କେସ୍‌ର ପରିଚାଳନା କରି ସେ ବହୁ ସମ୍ମାନ ଓ ପ୍ରତିଷ୍ଠା ପାଇଛନ୍ତି । ଏଇ ରାଜନୀତି ଓ ରାଜନେତା ସଂପର୍କିତ କେସ୍‌ଗୁଡ଼ିକ ଭିତରୁ ନିମ୍ନଲିଖିତ କେସ୍‌ଗୁଡ଼ିକ ବିଶେଷ ଉଲ୍ଲେଖଯୋଗ୍ୟ । |

୧୯୬୧ – ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନିର୍ବାଚନ ସଂକ୍ରାନ୍ତ କେସ୍ ।

୧୯୬୭ – ଖାନ୍ନା କମିଶନ୍ କେସ୍ ।

୧୯୭୧ – ବୀରେନ୍ ମିତ୍ରଙ୍କ ନିର୍ବାଚନ ସଂକ୍ରାନ୍ତ କେସ୍ ।

୧୯୭୧ – ଡକ୍ଟର ମହତାବଙ୍କ ସମ୍ପର୍କରେ ସରଯୂ ପ୍ରସାଦ କମିଶନ କେସ୍ ।

୧୯୮୪ – ବିଜୁ ପଟ୍ଟନାୟକଙ୍କ ନିର୍ବାଚନ କେସ୍ ।

୧୯୮୪ – ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନିର୍ବାଚନ ସଂକ୍ରାନ୍ତ କେସ୍ ।

ଆଡ୍‌ଭୋକେଟ୍ ରୂପେ ଉଲ୍ଲେଖଯୋଗ୍ୟ ଅନ୍ୟ କେତେକ ବୈଶିଷ୍ଟ୍ୟ–

(୧) ଇନ୍‌କମ୍ ଟାକ୍ସ ବିଭାଗର ଆଇନ୍ ପରାମର୍ଶଦାତା (୧୯୭୦)

(୨) ମଦ୍ୟପାନଜନିତ ବହୁଲୋକଙ୍କ ମୃତ୍ୟୁ ଘଟଣାର ତଦନ୍ତ କମିଶନରେ ସରକାରଙ୍କ ପକ୍ଷରୁ କେସ୍ ପରିଚାଳନା । (୧୯୯୨-୯୩)

(୩) ମଣ୍ଡଳ କମିଶନରେ ଛାତ୍ରମାନଙ୍କ ପକ୍ଷ ସମର୍ଥନ କରି କାର୍ଯ୍ୟ ।

(୪) ବୁର୍ଲା କେନାଲ୍‌ରେ କେତେକ ଛାତ୍ରଙ୍କ ମୃତ୍ୟୁ ସଂକ୍ରାନ୍ତ କେସ୍‌ରେ ମୃତ ଛାତ୍ରମାନଙ୍କ ସପକ୍ଷରେ କେସ୍ ପରିଚାଳନା କରିବାକୁ ସରକାରଙ୍କ ପକ୍ଷରୁ ନିଯୁକ୍ତ ।

କ୍ରୀଡ଼ା ଓ ସଂସ୍କୃତି କ୍ଷେତ୍ରରେ ବିବିଧ ଅନୁଷ୍ଠାନ ସହିତ ଜଡ଼ିତ–

(୧) କଟକ ଫୁଟ୍‌ବଲ୍ କ୍ଲବ୍‌ର ପ୍ରତିଷ୍ଠାତା ଓ ସଭାପତି ।

(୨) ସନ୍‌ସାଇନ୍ ଫୁଟ୍‌ବଲ୍ କ୍ଲବ୍‌ର ସଭାପତି ।

(୩) ଓଡ଼ିଶା ଆଥ୍‌ଲେଟିକ୍ ଆସୋସିଏସନ୍‌ର କାର୍ଯ୍ୟକାରୀ କମିଟିର ସଭ୍ୟ ।

(୪) ଓଡ଼ିଶା କ୍ରିକେଟ୍ ଆସୋସିଏସନ୍‌ର ପ୍ରତିଷ୍ଠାତା ସଭ୍ୟ ।

(୫) ସଭାପତି, 'ଉତ୍କଳ ସଂଗୀତ ସମାଜ' ।

(୬) ସଭାପତି – ନିଖିଳ ଭାରତ ଶାନ୍ତି ସମ୍ମିଳନୀର ଓଡ଼ିଶା ଶାଖା ।

(୭) ସଭାପତି, ଓଡ଼ିଶା ହାଇକୋର୍ଟ ବାର୍ ଆସୋସିଏସନ୍ (୧୯୯୨-୯୪) ଓ ବର୍ତ୍ତମାନ ମଧ୍ୟ ଏହି ଦାୟିତ୍ୱରେ ଅଛନ୍ତି ।

## ଲିଖିତ କେତେକ ବହି

'ସ୍ୱାଧୀନତା ସଂଗ୍ରାମର କେତେକ ତୁଙ୍ଗ ନେତାଙ୍କ ଜୀବନୀ',

'ମଣିଷ ପରି ମଣିଷ',

'ସଂବାଦପତ୍ର ଓ ସାଂବାଦିକ',

'ଖିୟାଲ',

'ଅସମାପ୍ତ',

'୧୯୪୨',

'ମାଟ୍ରିକୁଲେସନ୍ ଇତିହାସ' ।

—